॥ ଶ୍ରୀହରିଃ ॥

854

# ଭକ୍ତରାଜ ହନୁମାନ

(ଆଞ୍ଜନେୟଙ୍କର ସଂକ୍ଷିପ୍ତ କଥା)

भक्तराज हनुमान ( ओड़िआ )




ଗୀତାପ୍ରେସ୍, ଗୋରଖପୁର

॥ ଶ୍ରୀହରିଃ ॥

# ଭକ୍ତରାଜ ହନୁମାନ

## ଆଞ୍ଜନେୟଙ୍କର ସଂକ୍ଷିପ୍ତ କଥା

**भक्तराज हनुमान ( ओड़िआ )**

| ତ୍ୱମେବ | ମାତା | ଚ | ପିତା | ତ୍ୱମେବ |
|---|---|---|---|---|
| ତ୍ୱମେବ | ବନ୍ଧୁଶ୍ଚ | ସଖା | ତ୍ୱମେବ । | |
| ତ୍ୱମେବ | ବିଦ୍ୟା | ଦ୍ରବିଣଂ | ତ୍ୱମେବ | |
| ତ୍ୱମେବ | ସର୍ବଂ | ମମ | ଦେବଦେବ ॥ | |

ଲେଖକ - ଶାନ୍ତନୁ ବିହାରୀ ଦ୍ୱିବେଦୀ
ସମ୍ପାଦକ : ହନୁମାନ ପ୍ରସାଦ ପୋଦ୍ଦାର
ଓଡ଼ିଆ ଭାଷାନ୍ତର : ସ୍ୱାମୀ ତ୍ୟାଗସ୍ୱରୂପାନନ୍ଦ ସରସ୍ୱତୀ

॥ ଶ୍ରୀହରିଃ ॥

# ପ୍ରଥମ ସଂସ୍କରଣର ନିବେଦନ

ବହୁ ଦିନରୁ ବିଗ୍ଦର ଥିଲା ଯେ, ପ୍ରାଚୀନ କାଳର କେତେକ ଆଦର୍ଶ ପୁରୁଷଙ୍କର ଜୀବନୀ ଏବଂ ସେମାନଙ୍କର ଉପଦେଶ ସଂକ୍ଷେପରେ ପ୍ରକାଶ କରାଯିବ । କିନ୍ତୁ ଏହାର କୌଣସି ବ୍ୟବସ୍ଥା ହୋଇ ପାରି ନ ଥିଲା । ଅତ୍ୟନ୍ତ ଆନନ୍ଦର କଥା, ପଣ୍ଡିତ ଶ୍ରୀ ଶାନ୍ତନୁ ବିହାରୀ ଦ୍ୱିବେଦୀ ଏହି କାମ କରିବା ପାଇଁ ସ୍ୱୀକାର କଲେ ଏବଂ ଏହାର ଫଳସ୍ୱରୂପ 'ଭକ୍ତରାଜ ହନୁମାନ' ଆପଣଙ୍କ ହାତକୁ ଆସି ପାରିଲା । ଏଥିରେ ଥିବା ଅଧିକାଂଶ କଥା ବାଲ୍ମୀକୀୟ ରାମାୟଣ, ଅଧ୍ୟାତ୍ମ ରାମାୟଣ, ରାମଚରିତମାନସ, ପଦ୍ମପୁରାଣ ଏବଂ ବ୍ରହ୍ମାଣ୍ଡପୁରାଣ ଆଦି ଗ୍ରନ୍ଥରୁ ନିଆଯାଇଛି । କିଛି କଥା ପରମ୍ପରାକ୍ରମେ ଶୁଣାଯାଇଛି । ସମ୍ଭବତଃ ତାହା ମଧ୍ୟ କୌଣସି ଗ୍ରନ୍ଥର ଅନ୍ତର୍ଭୁକ୍ତ ଥିବ । ଆଶା ଓ ବିଶ୍ୱାସ, ପାଠକବୃନ୍ଦ ଭକ୍ତପ୍ରବର ଶ୍ରୀହନୁମାନଙ୍କର ପବିତ୍ର ପୁଣ୍ୟ ଜୀବନୀ ପାଠ କରି ଆନନ୍ଦିତ ହେବେ ।

—ହନୁମାନ ପ୍ରସାଦ ପୋଦ୍ଦାର

ସମ୍ପାଦକ

॥ ଶ୍ରୀ ହରିଃ ଶରଣମ୍ ॥

# ଭକ୍ତରାଜ ହନୁମାନ

॥ ୧ ॥

ମନୋଜବଂ ମାରୁତତୁଲ୍ୟବେଗଂ
ଜିତେନ୍ଦ୍ରିୟଂ ବୁଦ୍ଧିମତାଂ ବରିଷ୍ଠମ୍ ।
ବାତାତ୍ମଜଂ ବାନରଯୂଥମୁଖ୍ୟଂ
ଶ୍ରୀରାମଦୂତଂ ଶରଣଂ ପ୍ରପଦ୍ୟେ ॥

ଭଗବାନ ଶଙ୍କର ଭଗବତୀ ସତୀଙ୍କ ସହିତ କୈଳାସ ପର୍ବତର ଗୋଟିଏ ମନୋରମ ଶୃଙ୍ଗ ଉପରେ ଧ୍ୟାନରତ ଥିଲେ । ବଟବୃକ୍ଷର ଘନଛାୟାରେ ତାହାଙ୍କର କର୍ପୂର ସମାନ ଧବଳ ଶରୀର ଉପରେ ସୁନେଲି ରଙ୍ଗର ଜଟା ଲମ୍ବି ଯାଇଥାଏ । ହାତରେ ରୁଦ୍ରାକ୍ଷ ମାଳା, ଗଳାରେ ସର୍ପ, ସମ୍ମୁଖରେ ନନ୍ଦୀ ବସିଥାନ୍ତି । ତାହାଙ୍କର ସହଚର ଓ ଅନୁଚରମାନେ ତାହାଙ୍କଠାରୁ କିଛି ଦୂରରେ ପରସ୍ପର ମଧ୍ୟରେ ନାନାପ୍ରକାର କ୍ରୀଡ଼ାରେ ରତ ଥାନ୍ତି । ପ୍ରଭୁଙ୍କର ଶିରରେ ଚନ୍ଦ୍ରମା ଏବଂ ଅମୃତମୟୀ ଗଙ୍ଗାଙ୍କର ଧାରା ରହିଥିବାରୁ ତାଙ୍କର ତୃତୀୟ ନେତ୍ରର ବିଷମଜ୍ୱାଳା ଶାନ୍ତ ରହିଥାଏ । ଲଲାଟରେ ଭସ୍ମ ଅତି ସୁନ୍ଦର ଦେଖା ଯାଉଥାଏ ।

ହଠାତ୍ ପ୍ରଭୁ 'ରାମ ରାମ' କହି ନିଜର ସମାଧି ଭଙ୍ଗ କଲେ । ସତୀ ଦେଖିଲେ, ଭଗବାନ ଶଙ୍କର ତାହାଙ୍କୁ ଏକ ଅପୂର୍ବଭାବରେ ଚାହିଁ ଅଛନ୍ତି । ସେ ଆସି ଆଗରେ ଦଣ୍ଡାୟମାନ ହେଲେ ଏବଂ ହାତ ଯୋଡ଼ି ବିନୟର ସହିତ କହିଲେ, ''ସ୍ୱାମୀ ! ବର୍ତ୍ତମାନ ମୁଁ ଆପଣଙ୍କର କି ସେବା କରିବି ? ଆପଣ କଣ କିଛି କହିବାକୁ ଚାହୁଁଛନ୍ତି ? ଆପଣଙ୍କର ମୁଖାକୃତିରୁ ମୁଁ ସେପରି ଅନୁମାନ କରୁଛି ।'' ଭଗବାନ ଶଙ୍କର କହିଲେ, ''ପ୍ରିୟେ, ଆଜି ମୋ ମନରେ ଗୋଟିଏ ଶୁଭ ସଂକଳ୍ପ ଜାତ ହୋଇଛି । ମୁଁ ଭାବୁଛି, ମୁଁ ଯାହାଙ୍କୁ ନିରନ୍ତର ଧ୍ୟାନ କରୁଛି, ଯାହାଙ୍କର ନାମ ଜପି ଜପି ମୁଁ ଗଦ୍‌ଗଦ ହେଉଛି, ଯାହାଙ୍କର ବାସ୍ତବିକ ସ୍ୱରୂପକୁ ସ୍ମରଣ କରି ମୁଁ ସମାଧିସ୍ଥ ହୋଇଯାଉଛି, ମୋର ସେହି ଭଗବାନ, ସେହି ପ୍ରଭୁ ଅବତାର ଗ୍ରହଣ କରି ସଂସାରକୁ ଆସୁଛନ୍ତି । ସମସ୍ତ

ଦେବତା ଅବତାର ଗ୍ରହଣ କରି ତାଙ୍କର ସେବାର ସୁଯୋଗ ପ୍ରାପ୍ତ ହେବାକୁ ଇଚ୍ଛା କରନ୍ତି । ମୁଁ କାହିଁକି ସେଥିରୁ ବଞ୍ଚିତ ହେବି ? ମୁଁ ମଧ୍ୟ ସେଠାକୁ ଯାଇ, ତାହାଙ୍କର ସେବା କରି, ନିଜର ଯୁଗ ଯୁଗର ଲାଳସା ପୂର୍ଣ୍ଣ କରି ଜୀବନକୁ ସଫଳ କରିବାକୁ ଇଚ୍ଛା କରୁଛି ।''

ଭଗବାନ ଶଙ୍କରଙ୍କର ଏହି କଥା ଶୁଣି ସତୀ ହଠାତ୍ ଏପରି ଅବସ୍ଥାରେ କଣ କରିବା ଉଚିତ, କଣ ଅନୁଚିତ, କିଛି ଚିନ୍ତା କରି ପାରିଲେ ନାହିଁ । ତାହାଙ୍କ ମନରେ ଦୁଇ ପ୍ରକାର ଭାବ ଜାତ ହେଉଥିଲା । ପ୍ରଥମଟି ହେଲା, ପତିଦେବଙ୍କର ଅଭିଳାଷ ପୂର୍ଣ୍ଣ କରିବା ଏବଂ ଦ୍ୱିତୀୟଟି ହେଲା, ପତିଙ୍କ ଠାରୁ ତାଙ୍କର ବିଚ୍ଛେଦ ଯେପରି ନ ହୁଏ । ସେ କିଛି ସମୟ ଚିନ୍ତା କରି କହିଲେ, ''ପ୍ରଭୋ ! ଆପଣଙ୍କର ସଂକଳ୍ପ ଅତି ସୁନ୍ଦର । ମୁଁ ଯେପରି ମୋର ଇଷ୍ଟଦେବଙ୍କର ଅର୍ଥାତ୍ ଆପଣଙ୍କର ସେବା କରିବାକୁ ଇଚ୍ଛା କରୁଛି, ଆପଣ ସେପରି ଆପଣଙ୍କର ଇଷ୍ଟଦେବଙ୍କର ସେବା କରିବାକୁ ଚାହାଁନ୍ତି । କିନ୍ତୁ ବିଚ୍ଛେଦ ଭୟରେ ମୋର ହୃଦୟ କଣ ବୋଲି କଣ ହୋଇଯାଉଛି । ଆପଣ କୃପା କରି ମୋତେ ଏହି ଶକ୍ତି ଦିଅନ୍ତୁ, ଯେପରି ମୋର ହୃଦୟ ଆପଣଙ୍କର ସୁଖକୁ ସୁଖ ବୋଲି ମନେ କରିବ । ଆଉ ଗୋଟିଏ କଥା, ଭଗବାନଙ୍କର ଏହି ଅବତାରଟି ରାବଣକୁ ମାରିବା ନିମିତ୍ତ ଉଦ୍ଦିଷ୍ଟ । ରାବଣ ଆପଣଙ୍କର ବଡ଼ ଭକ୍ତ । ସେ ତାହାର ଦଶ ଶିର କାଟି ଆପଣଙ୍କୁ ଉପହାର ଦେଇଛି । ଏପରି ପରିସ୍ଥିତିରେ ତାହାକୁ ମାରିବା ନିମିତ୍ତ ଆପଣ କିପରି ପ୍ରଭୁଙ୍କୁ ସାହାଯ୍ୟ କରିବେ ?''

ଭଗବାନ ଶଙ୍କର ହସିବାକୁ ଲାଗିଲେ । ସେ କହିଲେ, ''ଦେବି ! ତୁମେ ବଡ଼ ଭୋଳୀ । ଏଥିରେ ତ ବିଚ୍ଛେଦର କଥା କିଛି ନାହିଁ । ମୁଁ ଗୋଟିଏ ରୂପରେ ଅବତୀର୍ଣ୍ଣ ହୋଇ ତାହାଙ୍କର ସେବା କରିବି ଏବଂ ଅନ୍ୟ ରୂପରେ ତୁମ ସହିତ ରହି ତୁମକୁ ଏହି ଲୀଳା ଦେଖାଇବି । ଆମେ ସମୟ ସମୟରେ ତାହାଙ୍କ ପାଖକୁ ଯାଇ ସ୍ତୁତି ପ୍ରାର୍ଥନା କରିବା । ବାକି ରହିଲା ତୁମର ଦ୍ୱିତୀୟ କଥା । ରାବଣ ମୋତେ ଯେପରି ଭକ୍ତି କରିଛି, ସେପରି ମୋର ଏକ ଅଂଶକୁ ଅବହେଳା ମଧ୍ୟ କରିଛି । ତୁମେ ଜାଣ, ମୁଁ ଏକାଦଶ ସ୍ୱରୂପରେ ରହେ । ଯେତେବେଳେ ସେ ତା'ର ଦଶ ଶିର ଦେଇ ମୋର ପୂଜା କରିଥିଲା, ସେତେବେଳେ ସେ ମୋର ଗୋଟିଏ ଅଂଶର ପୂଜା ନ କରି ଛାଡ଼ି ଦେଇଥିଲା । ବର୍ତ୍ତମାନ ମୁଁ ମୋର ସେହି ଅଂଶରୂପରେ ତା' ବିରୁଦ୍ଧରେ ଯୁଦ୍ଧ କରି ପାରିବି ଏବଂ ମୋର ପ୍ରଭୁଙ୍କର ସେବା ମଧ୍ୟ କରିପାରିବି । ମୁଁ

ବାୟୁଦେବତାଙ୍କ ଦ୍ୱାରା ଅଞ୍ଜନା ଗର୍ଭରେ ଅବତାର ନେବାକୁ ଠିକ୍ କରିଛି । ଏଥର ତୁମ ମନରେ ଆଉ କୌଣସି ଦୁଃଖ ନାହିଁ ତ ?'' ଏହା ଶୁଣି ଭଗବତୀ ସତୀ ପ୍ରସନ୍ନ ହୋଇଗଲେ ।

ଦେବରାଜ ଇନ୍ଦ୍ରଙ୍କର ଅମରାବତୀରେ ପୁଞ୍ଜିକସ୍ଥଳା ବୋଲି ଜଣେ ଅପ୍ସରା ଥିଲା । ଦିନେ ସେ କିଛି ଅପରାଧ କରି ପକାଇଲା । ତେଣୁ ତାକୁ ବାନରୀ ହୋଇ ପୃଥିବୀରେ ଜନ୍ମ ନେବାକୁ ପଡ଼ିଲା । ବହୁପ୍ରକାର ଅନୁନୟ ବିନୟ ପରେ ଶାପ ଦେଇଥିବା ଋଷିମାନେ ତାକୁ ଅନୁଗ୍ରହ କରି ବର ଦେଇଥିଲେ ଯେ, ସେ ଇଚ୍ଛା ଅନୁସାରେ ତାର ରୂପ ବଦଳାଇ ପାରିବ । ବାନର ରାଜା କେଶରୀ ତାକୁ ଅଞ୍ଜନା ନାମ ଦେଇ ପତ୍ନୀରୂପେ ଗ୍ରହଣ କରିଥିଲେ । ସେ ବଡ଼ ସୁନ୍ଦରୀ ଥିଲା ଏବଂ କେଶରୀ ତାହାକୁ ଅତ୍ୟନ୍ତ ଭଲ ପାଉଥିଲେ ।

ଦିନେ ସେ ଦୁହେଁ ମନୁଷ୍ୟ ରୂପ ଧରି ନିଜ ରାଜ୍ୟର ସୁମେରୁ ଶୃଙ୍ଗ ଉପରେ ବିଚରଣ କରୁଥିଲେ । ଧୀରେ ଧୀରେ ବାୟୁ ବହୁଥିଲା । ହଠାତ୍ ଦଲକାଏ ପବନ ବହି ଅଞ୍ଜନାଙ୍କର ଶାଢ଼ୀର ଏକ ଅଂଶ ଉଡ଼ାଇନେଲା । ଅଞ୍ଜନାଙ୍କୁ ଜଣାଗଲା, ସତେ ଯେପରି ତାଙ୍କୁ କେହି ସ୍ପର୍ଶ କରୁଛି । ସେ ନିଜର ବସ୍ତ୍ର ସମ୍ଭାଳି ନେଇ ଅଲଗା ଠିଆ ହୋଇଗଲେ ଏବଂ କହିଲେ, ''କିଏ ଏପରି ନିର୍ଲଜ୍ଜ ମୋର ପାତିବ୍ରତ୍ୟ ଧର୍ମକୁ ନଷ୍ଟ କରିବାକୁ ଚେଷ୍ଟା କରୁଛି ? ମୋର ଇଷ୍ଟଦେବ, ମୋର ପତିଦେବ ମୋ ସମ୍ମୁଖରେ ଅଛନ୍ତି । ମୁଁ ଅଭିଶାପ ଦେଇ ତାକୁ ଭସ୍ମ କରିଦେବି ।'' କିନ୍ତୁ ତାଙ୍କୁ ଜଣାଗଲା, ବାୟୁଦେବ କହୁଛନ୍ତି, ''ଦେବି ! ମୁଁ ତୁମର ବ୍ରତ ନଷ୍ଟ କରି ନାହିଁ । ତୁମର ଏପରି ଗୋଟିଏ ପୁତ୍ର ହେବ, ଯେ କି ଶକ୍ତିରେ ମୋ ସମାନ ହେବ । ବଳ ଓ ବୁଦ୍ଧିରେ କେହି ତାହାର ସମକକ୍ଷ ହୋଇ ପାରିବେ ନାହିଁ । ମୁଁ ତାହାକୁ ରକ୍ଷା କରିବି । ସେ ଭଗବାନଙ୍କର ସେବକ ହେବ ।'' ତାହା ପରେ ଅଞ୍ଜନା ଓ କେଶରୀ ନିଜ ସ୍ଥାନକୁ ଚାଲିଗଲେ । ଭଗବାନ ଶଙ୍କର ଅଂଶରୂପରେ ଅଞ୍ଜନାଙ୍କ କାନଦେଇ ତାଙ୍କର ଗର୍ଭରେ ପ୍ରବେଶ କଲେ ।*

卐 卐 卐 卐

---

* ଜେହି ସରୀର ରତି ରାମ ସୌଁ ସୋଇ ଆଦରହିଁ ସୁଜାନ ।
ରୁଦ୍ରଦେହ ତଜି ନେହ ବସ ସଂକର ଭେ ହନୁମାନ ॥
ଜାନି ରାମ ସେବା ସରସ ସମୁଝି କରବ ଅନୁମାନ ।
ପୁରୁଷା ତେ ସେୱକ ଭଏ ହର ତେ ଭେ ହନୁମାନ ॥
(ଦୋହାବଳୀ ୧୪୨-୧୪୩)

ଚୈତ୍ର ଶୁକ୍ଳପକ୍ଷ ୧୫ ଦିନ ମଙ୍ଗଳବାରରେ * ଅଞ୍ଜନାଙ୍କର ଗର୍ଭରୁ ଭଗବାନ ଶଙ୍କର ବାନରରୂପରେ ଅବତାର ଗ୍ରହଣ କଲେ । ଅଞ୍ଜନା ଓ କେଶରୀଙ୍କର ଆନନ୍ଦର ସୀମା ରହିଲା ନାହିଁ । ବାଳକ ଶୁକ୍ଳପକ୍ଷର ଚନ୍ଦ୍ରମାଙ୍କ ପରି ବଢ଼ିବାକୁ ଲାଗିଲା । ବାଳକର ଲାଳନପାଳନ ଅତ୍ୟନ୍ତ ଯତ୍ନ ସହକାରେ ହେଲା । ଅଞ୍ଜନା କୌଣସି ଆଡ଼େ ଗଲେ ତାହାକୁ ସାଥିରେ ନେଇ ଯାଉଥିଲେ । କେଶରୀ ମଧ୍ୟ ତାକୁ ପିଠିରେ ବସାଇ ଆନନ୍ଦରେ ବୁଲାଉଥିଲେ ।

ଦିନେ ବାଳକକୁ ଏକୁଟିଆ ଘରେ ଛାଡ଼ି ଅଞ୍ଜନା କୌଣସିଠାକୁ ଫଳମୂଳ ଆଣିବା ପାଇଁ ଚାଲି ଯାଇଥିଲେ । ତାହା ପୂର୍ବରୁ କେଶରୀ ମଧ୍ୟ ଘରୁ ଚାଲି ଯାଇଥିଲେ । ଏହି ସମୟରେ ବାଳକକୁ ଭୋକ ହେଲା । ସେ ଘରର ଏଣେ ତେଣେ ଖୋଜି କିଛି ପାଇଲା ନାହିଁ । ଶେଷରେ ତା'ର ଦୃଷ୍ଟି ବାଳସୂର୍ଯ୍ୟଙ୍କ ଉପରେ ପଡ଼ିଲା । ସେ ଭାବିଲା, "ଏହା ଗୋଟିଏ ସୁନ୍ଦର ଲାଲ ଫଳ ଅଟେ । ଏହା ମୋର ଖାଇବା ଓ ଖେଳିବା ଉଭୟ କାମରେ ଲାଗିବ ।" ତେଣୁ ସେ ସୂର୍ଯ୍ୟଙ୍କ ପାଖରେ ପହଞ୍ଚିବାକୁ ଚେଷ୍ଟା କଲା । ବାୟୁ ତାହାକୁ ପ୍ରଥମେ ଉଡ଼ିବା ଶକ୍ତି ଦେଇଥିଲେ; ଭଗବାନ ଶଙ୍କରଙ୍କର ଇଚ୍ଛାରେ ତାହା ମଧ୍ୟ ଆଶ୍ଚର୍ଯ୍ୟର କଥା ନ ଥିଲା ।

ସେହି ବାଳକ ଆକାଶରେ ଉଡ଼ିବାକୁ ଲାଗିଲା । ଦେବତା, ଦାନବ ଓ ଯକ୍ଷ ଏହା ଦେଖି ବିସ୍ମିତ ହୋଇଗଲେ । ବାୟୁଦେବଙ୍କର ମନରେ ଆଶଙ୍କା ହେଲା ଯେ, ତାଙ୍କର ଶିଶୁପୁତ୍ର ସୂର୍ଯ୍ୟଙ୍କ ଆଡ଼କୁ ଏପରି ଦୌଡୁଛି; ମଧ୍ୟାହ୍ନ ସୂର୍ଯ୍ୟଙ୍କର ପ୍ରଖର କିରଣରେ ସେ ଜଳିଯିବ ନାହିଁ ତ ? ତେଣୁ ସେ ହିମାଳୟ ଓ ମଳୟାଚଳର ଶୀତଳତା ଏକତ୍ର କରି ନିଜ ପୁତ୍ରର ପଛେ ପଛେ ଚାଲିଲେ । ସୂର୍ଯ୍ୟଙ୍କର ଦିବ୍ୟ ଦୃଷ୍ଟିରେ ବାଳକର ମହତ୍ତ୍ୱ ଛପି ରହି ନ ଥିଲା । ତାହାଙ୍କ ମନରେ ଧାରଣା ହେଲା, ଭଗବାନ ଶଙ୍କର ବାଳକରୂପରେ ତାହାଙ୍କ ପାଖକୁ ଆସୁଛନ୍ତି । ତାହାଙ୍କୁ ଏହା ମଧ୍ୟ ଅଛପା ନ ଥିଲା ଯେ, ତାଙ୍କର ପିତୃତୁଲ୍ୟ ବାୟୁଦେବଙ୍କ ଆଶୀର୍ବାଦରୁ ସେହି ବାଳକଟିର ଜନ୍ମ ହୋଇଛି ଏବଂ ସ୍ୱୟଂ ବାୟୁଦେବ ପୁତ୍ରର ରକ୍ଷା ନିମିତ୍ତ ସଙ୍ଗରେ ଆସୁଛନ୍ତି । ତେଣୁ ସେ ନିଜର କିରଣକୁ ଶୀତଳ କରିଦେଲେ । ମନେହେଲା, ସେ ସତେଯେପରି ନିଜର କୋମଳ କିରଣ ସ୍ପର୍ଶରେ ନିଜର ଛୋଟ ଭାଇକୁ ଖେଳାଇବାକୁ ଲାଗିଲେ ଅଥବା ଭଗବାନ ଶଙ୍କରଙ୍କୁ ସ୍ୱାଗତ କଲେ । ସେହି ବାଳକ ସୂର୍ଯ୍ୟଙ୍କର ରଥ ଉପରେ ବସି ତାହାଙ୍କ ସହିତ ଖେଳିବାକୁ ଲାଗିଲା ।

* ଅନ୍ୟ କେତେକ ମତରେ ହନୁମାନ କାର୍ତ୍ତିକ କୃଷ୍ଣପକ୍ଷ ୧୪ କିମ୍ବା କାର୍ତ୍ତିକ ଶୁକ୍ଳ ୧୫ ଦିନ ଜନ୍ମ ହୋଇଥିଲେ ।

ସେଦିନ ସୂର୍ଯ୍ୟ ପରାଗ ଥିଲା । ନିଜର ସମୟ ଜାଣି ରାହୁ ସୂର୍ଯ୍ୟଙ୍କୁ ଗ୍ରାସ କରିବାକୁ ଆସିଲା । ସେ ଦେଖିଲା, ଏକ ବାନର ଶିଶୁ ସୂର୍ଯ୍ୟଙ୍କ ରଥ ଉପର ବସିଛି । ପ୍ରଥମେ ରାହୁ ଖାତିର ନ କରି ସୂର୍ଯ୍ୟଙ୍କ ଉପରକୁ କୁଦି ପଡ଼ିଲା, କିନ୍ତୁ ବାଳକ ଯେତେବେଳେ ଜୋର କରି ତାହାକୁ ଧରିନେଲା, ସେ ଭୟଭୀତ ହୋଇ କୌଣସି ପ୍ରକାର ନିଜକୁ ବାନର କବଳରୁ ମୁକ୍ତ କରି ପଳାଇଗଲା । ସେ ଶୀଘ୍ର ଦେବରାଜ ଇନ୍ଦ୍ରଙ୍କ ନିକଟକୁ ଯାଇ କହିଲା, "ଦେବରାଜ ! ଆପଣ ସୂର୍ଯ୍ୟଙ୍କୁ ଗ୍ରାସ କରିବାର ଅଧିକାର ମୋତେ ଦେଇଥିଲେ । ବର୍ତ୍ତମାନ ଜଣ ଆଉ ଜଣକୁ ସେହି ଅଧିକାର ଦେଇଛନ୍ତି ?" ଇନ୍ଦ୍ର ଏ କଥାରୁ କିଛି ବୁଝି ପାରିଲେ ନାହିଁ । ସେ ଜୋର କରି ରାହୁକୁ ପୁଣି ଥରେ ସୂର୍ଯ୍ୟଙ୍କ ପାଖକୁ ପଠାଇଲେ । ଦ୍ୱିତୀୟ ଥର ରାହୁ ଯିବାରୁ ବାଳକର ପୂର୍ବ କଥା ମନେ ପଡ଼ିଗଲା । ସେ ଭାବିଲା, ତାହା ଖାଇବାର ସୁନ୍ଦର ଜିନିଷ, ତେଣୁ ସେ ରାହୁ ଉପରକୁ କୁଦି ପଡ଼ିଲା । ରାହୁ ସେହି ବାଳକର ତେଜରେ ଡରିଗଲା ଏବଂ ରକ୍ଷା କରିବା ନିମିତ୍ତ ଇନ୍ଦ୍ରଙ୍କୁ ଡାକ ପକାଇଲା । ଇନ୍ଦ୍ର ଐରାବତ ଉପରେ ଚଢ଼ି ତାକୁ ରକ୍ଷା କରିବାକୁ ଦୌଡ଼ିଲେ । ଐରାବତକୁ ଦେଖି ବାଳକ ରାହୁକୁ ଛାଡ଼ି ତାହା ଏକ ସୁନ୍ଦର ଫଳ ବୋଲି ଭାବି ଧରିବାକୁ ଦୌଡ଼ିଲା । ବର୍ତ୍ତମାନ ଇନ୍ଦ୍ର ଭୟ କରି ନିଜର ବଜ୍ର ମାରିଲେ । ଫଳରେ ବାଳକର ବାମ ହନୁହାଡ଼ ଭାଙ୍ଗିଗଲା । ବାଳକ ଆହତ ହୋଇ ପାହାଡ଼ ଉପରେ ଢଳି ପଡ଼ିଲା ଏବଂ ଛଟପଟ ହେବାକୁ ଲାଗିଲା ।

ବାୟୁଦେବ ବାଳକକୁ ଉଠାଇ ଗୁମ୍ଫାକୁ ନେଇଗଲେ । ଇନ୍ଦ୍ରଙ୍କ ଉପରେ ତାଙ୍କର ଅତ୍ୟନ୍ତ କ୍ରୋଧ ହେଲା ଏବଂ ସେ ନିଜର ଗତି ବନ୍ଦ କରିଦେଲେ । ବାୟୁଚଳନ ବନ୍ଦ ହୋଇଯିବାରୁ ସମସ୍ତେ କାଠପରି ହୋଇଗଲେ ।

ତ୍ରିଲୋକର ଅବସ୍ଥା ଅସମ୍ଭାଳ ହେଲା । ସମସ୍ତଙ୍କର ଶ୍ୱାସ ବନ୍ଦ ହୋଇଗଲା । ଦେବତାମାନେ ଅସ୍ତବ୍ୟସ୍ତ ହେଲେ । ଇନ୍ଦ୍ର ବ୍ରହ୍ମାଙ୍କ ନିକଟକୁ ଦୌଡ଼ିଲେ । ସବୁ ଶୁଣି ବ୍ରହ୍ମା ମୁହୂର୍ତ୍ତେ ବିଳମ୍ବ ନ କରି ବାଳକ ଥିବା ଗୁମ୍ଫାକୁ ଚାଲିଆସିଲେ ଏବଂ ନିଜ ହାତରେ ବାଳକକୁ ସ୍ପର୍ଶ କରି ଜୀବିତ କରିଦେଲେ । ବାଳକ ଉଠି ଠିଆ ହେଲା । ବାୟୁଦେବ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ସାରା ଜଗତରେ ପ୍ରାଣ ସଂଗ୍ରର କରିଦେଲେ । ବ୍ରହ୍ମା ଦେବତାମାନଙ୍କୁ କହିଲେ, "ଏହି ବାଳକ ସାଧାରଣ ବାଳକ ନୁହେଁ । ଏ ଦେବତାଙ୍କର କାର୍ଯ୍ୟ ସାଧନ କରିବା ନିମନ୍ତେ ପ୍ରକଟ ହୋଇଛି । ସେଥିପାଇଁ ସମସ୍ତ ଦେବତା ଏହାକୁ ବର ପ୍ରଦାନ କରିବା ଉଚିତ ।" ତପରେ ଇନ୍ଦ୍ର କହିଲେ, ତାଙ୍କର ବଜ୍ର ଦ୍ୱାରା

ବାଳକଟିର ହନୁ ଭାଙ୍ଗିଯାଇ ଥିବାରୁ ତାହାର ନାମ ହନୁମାନ ହେବ । ସେ ଆହୁରି ମଧ୍ୟ ବର ଦେଲେ ଯେ, ବଜ୍ରଦ୍ୱାରା ତାହାର କିଛି କ୍ଷତି ହେବ ନାହିଁ । ସୂର୍ଯ୍ୟ ତାଙ୍କର ତେଜର ଶହେଭାଗରୁ ଏକଭାଗ ହନୁମାନଙ୍କୁ ପ୍ରଦାନ କରି କହିଲେ, ଉକ୍ତ ଶକ୍ତିଦ୍ୱାରା ସେ ନିଜର ରୂପ ବଦଳାଇ ପାରିବେ । ତାଙ୍କର ଅଧ୍ୟୟନ କରିବା ସମୟ ଆସିଲେ, ସୂର୍ଯ୍ୟ ତାଙ୍କୁ ସମ୍ପୂର୍ଣ୍ଣ ଶାସ୍ତ୍ର ଶିକ୍ଷା ଦେବେ ଓ ହନୁମାନ ଅତ୍ୟନ୍ତ ବାଗ୍ମୀ ହେବେ । ବରୁଣ ନିଜର ପାଶରୁ ଏବଂ ଜଳରୁ ନିର୍ଭୟ ହେବାର ବର ଦେଲେ । କୁବେର ଆଦି ଦେବତାମାନେ ବି ହନୁମାନଙ୍କୁ ନିଜ ନିଜର ଶକ୍ତି ପ୍ରଦାନ କଲେ । ବିଶ୍ୱକର୍ମା ତାଙ୍କ ଦ୍ୱାରା ନିର୍ମିତ ଦିବ୍ୟାସ୍ତ୍ରମାନଙ୍କ ଦ୍ୱାରା ହନୁମାନ ଅବଧ୍ୟ ହେବେ ବୋଲି ବରଦେଲେ । ବ୍ରହ୍ମା ବ୍ରହ୍ମଜ୍ଞାନ ଉପଦେଶ ଦେଲେ ଓ ତାଙ୍କୁ ଚିରାୟୁ କରିବା ସଙ୍ଗେ ସଙ୍ଗେ ବ୍ରହ୍ମାସ୍ତ୍ର ଓ ବ୍ରହ୍ମଶାପରୁ ମଧ୍ୟ ମୁକ୍ତ କରିଦେଲେ ।

ସେଠାରୁ ଫେରିବା ସମୟରେ ବ୍ରହ୍ମା ବାୟୁଦେବଙ୍କୁ କହିଲେ ଯେ, ତାଙ୍କର ପୁତ୍ର ବଡ଼ ବୀର ହେବ, ଇଚ୍ଛାନୁସାରେ ରୂପ ଧାରଣ କରିପାରିବ ଏବଂ ମନପରି ତୀବ୍ରଗାମୀ ହେବ । ତାହାର ଗତି ଅପ୍ରତିହତ ହେବ । କୀର୍ତ୍ତି ଅମର ହେବ । ସେ ରାମ-ରାବଣ ଯୁଦ୍ଧରେ ରାମଙ୍କର ସହାୟକ ହେବ ତଥା ପ୍ରୀତିଭାଜନ ହୋଇପାରିବ । ହନୁମାନଙ୍କୁ ଏହିପରି ବର ଦେଇ ସମସ୍ତ ଦେବତା ନିଜ ନିଜ ଧାମକୁ ପ୍ରସ୍ଥାନ କଲେ । ଅଞ୍ଜନା ଓ କେଶରୀ ଏହି ସମସ୍ତ କଥା ଦେଖି ଅପାର ଆନନ୍ଦ ଲାଭ କଲେ ।

ପିଲାଦିନରୁ ହନୁମାନ ଅତ୍ୟନ୍ତ ଦୁଷ୍ଟ ଥିଲେ । ଏକେ ତ ବାନର, ଦ୍ୱିତୀୟରେ ବାଳକ ଏବଂ ତୃତୀୟରେ ଦେବତାମାନଙ୍କ ବରରେ ଅସୀମ ବଳର ଅଧିକାରୀ; ପୁଣି ରୁଦ୍ରଙ୍କର ଅଂଶ ତାଙ୍କଠାରେ ଥିଲା । ସେ ଋଷିମାନଙ୍କର ଆସନ ଉଠାଇ ନେଇ ଗଛରେ ଟଙ୍ଗାଇ ଦେଉଥିଲେ; କମଣ୍ଡଳୁର ଜଳ ଢାଳି ଦେଉଥିଲେ; ଲେଙ୍ଗୁଟି ଚିରି ଟିକିଟିକି କରି ଦେଉଥିଲେ । ବେଳେବେଳେ ସେମାନଙ୍କର ଦାଢ଼ି ଟାଣି ଦେଉଥିଲେ । ତାହାଙ୍କୁ ବଳପୂର୍ବକ କେହି ଧରି ପାରୁ ନ ଥିଲେ । ସମସ୍ତେ ବ୍ୟତିବ୍ୟସ୍ତ ହେଉଥିଲେ । ହନୁମାନ କ୍ରମେ ବଡ଼ ହେଲେ, ତାଙ୍କର ବିଦ୍ୟାଧ୍ୟୟନ କରିବାର ସମୟ ଆସିଗଲା; କିନ୍ତୁ ତାଙ୍କର ଚଞ୍ଚଳତା ସେପରି ରହିଲା । ଅଞ୍ଜନା ଓ କେଶରୀ ଅତ୍ୟନ୍ତ ଚିନ୍ତିତ ହେଲେ । ସେମାନେ ଅନେକ ପ୍ରକାର ଉପାୟ କଲେ; କିନ୍ତୁ ହନୁମାନଙ୍କର ପ୍ରକୃତି ବଦଳିଲା ନାହିଁ । ସେମାନେ ବାଳକର ଚଞ୍ଚଳତା ସୁଧାରିବା ପାଇଁ କିଛି ଉପାୟ କରିବା ନିମନ୍ତେ ଋଷିମାନଙ୍କୁ ପ୍ରାର୍ଥନା କଲେ । ଋଷିମାନେ ବିଚାର କରି ଦେଖିଲେ ଯେ,

ବାଳକର ନିଜର ବଳପ୍ରତି ଗର୍ବ ଥିବାରୁ ସେ ଏପରି ହେଉଛି; ଯଦି ସେ ନିଜର ବଳ କଥା ଭୁଲିଯିବ, ତେବେ ସବୁ ଠିକ୍ ହୋଇଯିବ । ସେମାନେ ହନୁମାନଙ୍କୁ ଶାପ ଦେଲେ, "ତୁମେ ତୁମର ବଳକୁ ଭୁଲିଯାଅ । ଯଦି କେହି କେବେ ତୁମକୁ ତୁମର କୀର୍ତ୍ତି ସ୍ମରଣ କରାଇ ଦେବ, ତେବେ ତୁମେ ନିଜ ବଳ ସ୍ମରଣ କରି ପୂର୍ବଶକ୍ତି ଫେରି ପାଇବ ।" ଫଳରେ ହନୁମାନ ନିଜ ବଳ କଥା ଭୁଲିଗଲେ ।

ବର୍ତ୍ତମାନ ତାଙ୍କର ବିଦ୍ୟାଧ୍ୟୟନର ସମୟ ଆସିଲା । ବାନରରାଜ କେଶରୀ ତାଙ୍କର ଯଥୋଚିତ ସଂସ୍କାର କରି ବିଦ୍ୟାଧ୍ୟୟନ ପାଇଁ ସୂର୍ଯ୍ୟଙ୍କ ନିକଟକୁ ପଠାଇଦେଲେ । ସେଠାକୁ ଯାଇ ହନୁମାନ ସମସ୍ତ ବେଦବେଦାଙ୍ଗ ଅଧ୍ୟୟନ କଲେ । ସେ ତ ସାକ୍ଷାତ୍ ଶିବ ଥିଲେ, ତାହାଙ୍କର ଅଧ୍ୟୟନର ବା କି ଆବଶ୍ୟକତା ଥିଲା ! ତଥାପି ସମ୍ପ୍ରଦାୟ ପରମ୍ପରା ରକ୍ଷା ନିମିତ୍ତ ସେ ସକଳ ବିଦ୍ୟା ଅଧ୍ୟୟନ କଲେ । ବିଦ୍ୟା ସମାପ୍ତ ହେବା ପରେ ନିଜର ପିତାମାତାଙ୍କ ପାଖକୁ ଫେରି ଆସିଲେ । ସୂର୍ଯ୍ୟଙ୍କର କୃପାରେ ନିଜର ପୁତ୍ରକୁ ସର୍ବବିଦ୍ୟାରେ ପାରଙ୍ଗମ ଦେଖି ପିତାମାତା ଅତ୍ୟନ୍ତ ଆନନ୍ଦିତ ହେଲେ ।

卐 卐 卐 卐

ସେତେବେଳକୁ ଭଗବାନ ରାମ ଅବତୀର୍ଣ୍ଣ ହୋଇ ସାରିଥିଲେ । ଭଗବାନ ଶଙ୍କର ତାହାଙ୍କର ବାଲ୍ୟଲୀଳା ଦର୍ଶନ କରିବା ନିମିତ୍ତ ପ୍ରାୟ ଅଯୋଧ୍ୟାକୁ ଆସୁଥିଲେ ଏବଂ ଅଯୋଧ୍ୟାରେ ରହୁଥିଲେ । ସେ କେବେ ଜ୍ୟୋତିଷ ହୋଇ ଭଗବାନଙ୍କର ହାତ ଦେଖୁଥିଲେ ତ, ପୁଣି କେବେ ଭିକ୍ଷୁକ ହୋଇ ଆଶୀର୍ବାଦ କରୁଥିଲେ । ଯେତେବେଳେ ଭଗବାନ ରାମ ଖେଳିବା ପାଇଁ ବାହାରକୁ ଆସିଲେ, ସେତେବେଳେ ଦିନେ ଗୋଟିଏ ମାଙ୍କଡ଼ିଆ ଆସିଲା; ସଙ୍ଗରେ ଗୋଟିଏ ସୁନ୍ଦର ନାଚୁଥିବା ମାଙ୍କଡ଼ ଆଣିଥାଏ । ସେ ଡମ୍ବରୁ ବଜାଇ ବଜାଇ ରାମମହଲ ଫାଟକ ପାଖରେ ପହଞ୍ଚିଗଲା । ଡମ୍ବରୁ ଶବ୍ଦ ଶୁଣି ବହୁତ ପିଲା ଆସି ପହଞ୍ଚିଗଲେ । ସେହି ମାଙ୍କଡ଼ ସାଧାରଣ ମାଙ୍କଡ଼ ନ ଥିଲା । ନିଜର ଇଷ୍ଟଦେବ ଭଗବାନଙ୍କୁ ଆନନ୍ଦ ଦେବା ପାଇଁ ସ୍ୱୟଂ ଶିବ ମାଙ୍କଡ଼ ହୋଇ ଆସିଥିଲେ । ମାଙ୍କଡ଼ିଆ ମଧ୍ୟ ଥିଲେ ସେଇ ନିଜେ । ସେ ପ୍ରଭୁଙ୍କର ଲୀଳା ଦେଖିବା ନିମିତ୍ତ, ପ୍ରଭୁଙ୍କ ସଙ୍ଗରେ ଖେଳିବା ନିମିତ୍ତ ଏବଂ ପ୍ରଭୁଙ୍କୁ ସର୍ବଦା ପ୍ରସନ୍ନ କରିବା ନିମିତ୍ତ ଯତ୍ନ କରୁଥିଲେ ।

ଭଗବାନ ରାମ ମାଙ୍କଡ଼କୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ । ନାଚ ଦେଖି ସମସ୍ତେ ଫେରିଗଲେ, କିନ୍ତୁ ରହିଗଲେ ଭଗବାନ ରାମ । ସେ କହିଲେ,

"ମୁଁ ମାଙ୍କଡ଼କୁ ନେବି ।" ରାଜକୁମାରଙ୍କ ଅଳି କିପରି ପ୍ରତ୍ୟାଖ୍ୟାନ କରାଯିବ ! ମହାରାଜ ଦଶରଥ ଆଜ୍ଞା ଦେଲେ, "ମାଙ୍କଡ଼ ବଦଳରେ ମାଙ୍କଡ଼ିଆ ଯେତେ ଧନ ଇଚ୍ଛା କରୁଛି, ତାହାକୁ ଦେଇଦିଅ ଏବଂ ମାଙ୍କଡ଼କୁ ମୋର ଶ୍ୟାମସୁନ୍ଦରକୁ ଦିଅ ।" କିନ୍ତୁ ମାଙ୍କଡ଼ିଆ ତ ଧନ ପାଇଁ ଆସି ନ ଥିଲା । ସେ ଆସିଥିଲା ନିଜକୁ ପ୍ରଭୁଙ୍କ ଚରଣରେ ସମର୍ପିତ କରିବାକୁ । ତାହା ହିଁ ହେଲା । ଭଗବାନ ରାମ ନିଜ ହାତରେ ଏହି ମାଙ୍କଡ଼କୁ ଗ୍ରହଣ କଲେ । ଏ ପର୍ଯ୍ୟନ୍ତ ମାଙ୍କଡ଼ ନିଜେ ନିଜକୁ ନଚାଉଥିଲା । ବର୍ତ୍ତମାନ ନଚାଇବାବାଲା ହେଲେ ଭଗବାନ ଶ୍ରୀରାମ ଏବଂ ନାଚିବାବାଲା ହେଲା ମାଙ୍କଡ଼ । ଯୁଗଯୁଗର ଅଭିଳାଷ ପୂର୍ଣ୍ଣ ହେଲା । ସେ ଅତ୍ୟନ୍ତ ଆନନ୍ଦରେ ନାଚିବାକୁ ଲାଗିଲା । ସେହି ନାଚ ଦେଖି ସମସ୍ତେ ତନ୍ମୟ ହୋଇଗଲେ ଏବଂ ମାଙ୍କଡ଼ିଆ ଅଦୃଶ୍ୟ ହୋଇଗଲା । ସେହି ମାଙ୍କଡ଼ିଆ ମାଙ୍କଡ଼ ମଧ୍ୟରେ ପ୍ରବେଶ କରିଗଲା, ନା ନିଜର କାର୍ଯ୍ୟ ପୂର୍ଣ୍ଣ ହେବାରୁ କୈଳାସକୁ ଚାଲିଗଲା, ତାହା କେହି ଜାଣି ପାରିଲେ ନାହିଁ ।

ଏହିରୂପେ ହନୁମାନ ବହୁଦିନ ପର୍ଯ୍ୟନ୍ତ ଭଗବାନ ରାମଙ୍କର ସେବା ଓ ମନୋରଞ୍ଜନ କରିବାକୁ ଲାଗିଲେ । ଯେତେବେଳେ ବିଶ୍ୱାମିତ୍ର ରାମ ଓ ଲକ୍ଷ୍ମଣଙ୍କୁ ନେବାକୁ ଆସିଲେ, ସେତେବେଳେ ଭଗବାନ ରାମ ତାହାଙ୍କୁ ଏକାନ୍ତକୁ ଡାକି ନେଇ ବୁଝାଇଲେ, "ହନୁମାନ ! ତୁମେ ମୋର ଅନ୍ତରଙ୍ଗ ସଖା । ତୁମଠାରେ ମୋର କୌଣସି ଲୀଳା ଅଛପା ନାହିଁ । ଭବିଷ୍ୟତରେ ମୁଁ ରାବଣକୁ ମାରିବି । ସେହି ସମୟରେ ମୁଁ ବାନରମାନଙ୍କ ସାହାଯ୍ୟ ଲୋଡ଼ିବି । ରାବଣ ବାଲି ସହିତ ମିଳି ରହିଛି । ଖର-ଦୂଷଣ, ତ୍ରିଶିରା, ଶୂର୍ପଣଖା ଦଣ୍ଡକବନରେ ଅଛନ୍ତି । ମାରୀଚ, ସୁବାହୁ, ତାଡ଼କା ଏହି ପାଖରେ ଅଛନ୍ତି । ଏମାନଙ୍କର ମାୟାଜାଲ ଚାରିପଟେ ବିଛାଯାଇଛି । ତୁମେ ଶବରୀ ସହିତ ଭେଟି ଋଷ୍ୟମୂକ ପର୍ବତକୁ ଯାଅ । ସେଠାରେ ସୁଗ୍ରୀବ ସହିତ ମିତ୍ରତା କର । ଧୀରେ ଧୀରେ ରାସ୍ତା ପରିଷ୍କାର କରି ମୁଁ ସେଠାକୁ ଯିବି । ସେତେବେଳେ ତୁମେ ସୁଗ୍ରୀବଙ୍କ ସହିତ ମୋର ମିତ୍ରତା କରାଇବ ଏବଂ ବାନରସେନା ଏକତ୍ରିତ କରିବ । ଶେଷରେ ରାବଣକୁ ମାରି ଅବତାର କାର୍ଯ୍ୟ ପୂର୍ଣ୍ଣ କରାଯିବ ।"

ଭଗବାନଙ୍କୁ ଛାଡ଼ିଯିବା ନିମିତ୍ତ ଇଚ୍ଛା ନ ଥିଲେ ମଧ୍ୟ, ହନୁମାନ ଭଗବାନଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି, ତାହାଙ୍କର ନାମ ସ୍ମରଣ କରି ଋଷ୍ୟମୂକ ପର୍ବତକୁ ପ୍ରସ୍ଥାନ କଲେ ।



(୨)

ସେତେବେଳେ ବାଳିକୁ ଭୟ କରି ସୁଗ୍ରୀବ ମିତ୍ରମାନଙ୍କ ସହିତ ଋଷ୍ୟମୂକ ପର୍ବତରେ ରହୁଥିଲେ । ହନୁମାନ ତାହାଙ୍କ ସହିତ ଥିଲେ । ବାଳିର ଲୋକେ ଆସି ତାହାଙ୍କ ଉପରେ କାଳେ ଆକ୍ରମଣ କରିବେ, ଏହି ଆଶଙ୍କାରେ ସେ ସର୍ବଦା ଭୟଭୀତ ହୋଇ ରହିଥିଲେ । ଅଭିଶାପ ଭୟରେ ବାଳି ନିଜେ ସେଠାକୁ ଆସିପାରୁ ନ ଥିଲେ । ଦିନେ ସୁଗ୍ରୀବ ନିଜ ମନ୍ତ୍ରୀମାନଙ୍କୁ ଧରି ଏବଂ ପ୍ରିୟ ହନୁମାନଙ୍କ ସହିତ ବସି କିଛି ରାଜନୈତିକ ଚର୍ଚ୍ଚା କରୁଥିଲେ, ହଠାତ୍ ସେମାନଙ୍କର ଦୃଷ୍ଟି ପମ୍ପାସର ଆଡ଼କୁ ଚାଲିଗଲା । ସେଠାରେ ଦୁଇଜଣ ସଶସ୍ତ୍ର ବ୍ୟକ୍ତି ଦଣ୍ଡାୟମାନ ହୋଇଥିବା ଦେଖାଗଲା । ସେମାନଙ୍କର ଉଦ୍ଦେଶ୍ୟ ସ୍ପଷ୍ଟ ଜଣା ପଡୁ ନ ଥିଲା । ସେମାନେ କାହାରିକୁ ଅନୁସଂଧାନ କଲାପରି ଜଣାଯାଉଥିଲା । ସେମାନଙ୍କର ଚାଲିବା ଢଙ୍ଗ, ବୀରୋଚିତ ଶରୀର, ସେମାନଙ୍କର ଅସ୍ତ୍ରଶସ୍ତ୍ର, ବଲ୍କଲ ପରିଧାନ ଏବଂ ଜଟାଜୁଟ ଦେଖି ସୁଗ୍ରୀବଙ୍କର ବଡ଼ ଆଶଙ୍କା ହେଲା । ସେ ହନୁମାନଙ୍କୁ କହିଲେ, "ଭାଇ ! ତୁମେ ଟିକିଏ ଅନୁସନ୍ଧାନ କରି କୁହ, ସେ ଦୁହେଁ କିଏ । ଯଦି ଶତ୍ରୁପକ୍ଷୀୟ ହୋଇଥାନ୍ତି, ତେବେ ଆମ୍ଭେମାନେ ଏଠାରୁ ଚାଲିଯିବା ଉଚିତ; ଯଦି ଉଦାସୀନ ଅଟନ୍ତି ବା କିଛି ସହାୟତା ଆଶା କରନ୍ତି, ତେବେ ମିତ୍ରତା କରିନେଇ ଏକ ଅନ୍ୟର ଇଷ୍ଟସିଦ୍ଧିରେ ସହାୟକ ହେବା ଉଚିତ । ତୁମେ ବ୍ରହ୍ମଚାରୀ ବେଶ ଧାରଣ କରି ସେମାନଙ୍କର ଅନୁସଂଧାନ କର । ତାପରେ କଣ କରିବାକୁ ହେବ, ମୋତେ ଠାରି ଜଣାଇଦେବ ।" ହନୁମାନ ସୁଗ୍ରୀବଙ୍କର ଆଜ୍ଞା ସ୍ୱୀକାର କଲେ ।

ସୁଗ୍ରୀବଙ୍କର ଉପଦେଶମତେ ହନୁମାନ ବ୍ରାହ୍ମଣବେଶ ଧରି ସେ ଦୁହିଁଙ୍କ ପାଖକୁ ଗଲେ । ସେ ଯଥାଯୋଗ୍ୟ ଶିଷ୍ଟାଚାର ସହିତ ଦୁହିଁଙ୍କୁ ପ୍ରଶଂସା କରି, ସେମାନଙ୍କର ପରିଚୟ ଜିଜ୍ଞାସା କଲେ । ସେ ସେମାନଙ୍କୁ କହିଲେ, "ଆପଣମାନଙ୍କର ବୀରୋଚିତ ଶରୀର ଗଠନ ଓ ଶସ୍ତ୍ରାସ୍ତ୍ର ଦେଖି ମୋର ଅନୁମାନ ଯେ, ଆପଣମାନେ ବୀରପୁରୁଷ ଅଟନ୍ତି । ଆପଣଙ୍କର କୋମଳ ଚରଣ ଦେଖି ମୋର ଅନୁମାନ ଯେ, ଆପଣ ରାଜମହଲରେ ରହନ୍ତି; କେବେ ବଣ ବା ପାହାଡ଼ରେ ରହିବାକୁ ପଡ଼େ ନାହିଁ । ଆପଣଙ୍କର ବେଶଭୂଷା ଦେଖି ଜଣାଯାଉଛି, ଆପଣମାନେ ଋଷିକୁମାର ଅଟନ୍ତି, କିନ୍ତୁ ଏଥିରୁ କୌଣସିଟି କଥା ନିଶ୍ଚିତ ନୁହେଁ । ଆପଣଙ୍କର ମୁଖମଣ୍ଡଳରେ ତେଜ ସ୍ପଷ୍ଟ ସୂଚନା ଦେଉଅଛି ଯେ, ଆପଣମାନେ ସାଧାରଣ ପୁରୁଷ ନୁହଁନ୍ତି; ଅଲୌକିକ ପୁରୁଷ ଅଟନ୍ତି ।

ଆପଣ ତ୍ରିଦେବଙ୍କ ମଧ୍ୟରୁ କେହି ଅଟନ୍ତି କି ? ନା ସାକ୍ଷାତ ନରନାରାୟଣ ? ମୋର ମନରେ ଅତ୍ୟନ୍ତ ଉତ୍କଣ୍ଠା ଜାତ ହେଉଛି । ଆପଣଙ୍କ ପ୍ରତି ମୋର ବିଶେଷ ଆକର୍ଷଣ ଆସିଯାଉଛି । ଆପଣଙ୍କର ମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟରେ ମୋର ଚିତ୍ତ ମୁଗ୍ଧ ହେଉଛି । ଆପଣ ମୋର ଅତ୍ୟନ୍ତ ପ୍ରେମାସ୍ପଦ ଜଣା ପଡୁଛନ୍ତି । ମୁଁ କେବେ ଆପଣଙ୍କ ସହିତ ରହିଥିବା ପରି ମୋର ହୃଦୟରେ ବାରମ୍ବାର ସ୍ମୃତି ଜାଗ୍ରତ ହେଉଛି । ଆପଣ କୃପା କରି ମୋର ସନ୍ଦେହ ମୋଚନ କରନ୍ତୁ ।''

ଭଗବାନ ରାମ ମନେ ମନେ ହସି ହନୁମାନଙ୍କର କଥା ଶୁଣୁଥିଲେ । ସେ ଲକ୍ଷ୍ମଣଙ୍କୁ ଦେଖାଇ କହିଲେ, ''ଏହି ବ୍ରାହ୍ମଣ ବଡ଼ ବୁଦ୍ଧିମାନ୍ । ଏହାଙ୍କ କଥାରୁ ଜଣାପଡୁଛି, ଏ ସମଗ୍ର ବେଦ ବେଦାଙ୍ଗ ଅଧ୍ୟୟନ କରିଛନ୍ତି । ଏହାଙ୍କର କଥାରେ ଟିକିଏ ହେଲେ ଅଶୁଦ୍ଧି ନାହିଁ । ଏହାଙ୍କର ଆକୃତିରୁ କୌଣସି ଦୂଷିତ ଲକ୍ଷଣ ଦେଖାଯାଉ ନାହିଁ । ଏ ତ କୌଣସି ରାଜାଙ୍କର ମନ୍ତ୍ରୀ ହେବାକୁ ଯୋଗ୍ୟ ଅଟନ୍ତି । ଏହାଙ୍କର ଉଚ୍ଚାରଣ ଶୈଳୀ ଓ ନୀତିମତ୍ତା ଅତ୍ୟନ୍ତ ଗମ୍ଭୀର ଓ ପ୍ରଭାବଶାଳୀ ଅଟେ ।''

ରାମଙ୍କ ନିର୍ଦ୍ଦେଶରେ ଲକ୍ଷ୍ମଣ କହିଲେ, ''ବ୍ରାହ୍ମଣଦେବ ! ଆମ୍ଭେମାନେ ଅଯୋଧ୍ୟା ନରେଶ ମହାରାଜା ଦଶରଥଙ୍କର ପୁତ୍ର; ତାହାଙ୍କର ଆଜ୍ଞା ପାଳନ କରି ଚଉଦବର୍ଷ ନିମିତ୍ତ ଆମେ ବଣକୁ ଆସିଅଛୁଁ । ଏଠାରେ କୌଣସି ରାକ୍ଷସ ଜନକନନ୍ଦିନୀ ସୀତାଙ୍କୁ ଅପହରଣ କରି ନେଇଯାଇଛି । ଆମ୍ଭେମାନେ ତାହାଙ୍କୁ ଖୋଜି ଖୋଜି ଏଠାରେ ବୁଲୁଛୁଁ; ଏବେ ଆପଣ ଆପଣଙ୍କର ପରିଚୟ ଦିଅନ୍ତୁ ।''

ଲକ୍ଷ୍ମଣଙ୍କର କଥା ସରିବା ସଙ୍ଗେ ସଙ୍ଗେ ହନୁମାନଙ୍କର ରୂପ ବଦଳିଗଲା । ସେ ବାନରରୂପରେ ଭଗବାନଙ୍କ ଚରଣ ତଳେ ପଡ଼ିଗଲେ । ତାଙ୍କର ମନରେ ଧାରଣା ହେଲା, ''ଅନ୍ୟ ବେଶ ଧରି କପଟାଚରଣ କରିଥିବାରୁ ଭଗବାନ ମୋ ସହିତ କଥାବାର୍ତ୍ତା କଲେ ନାହିଁ । ମୁଁ ତାହାଙ୍କୁ ଚିହ୍ନି ପାରିଲି ନାହିଁ, ସେଥିପାଇଁ ସେ ମୋତେ ଚିହ୍ନି ପାରିଲେ ନାହିଁ । ମୁଁ ପରିଚୟ ପଚ୍ଚରିଲି, ସେ ମଧ୍ୟ ମୋତେ ପରିଚୟ ପଚ୍ଚରିଲେ । ଏ ସମସ୍ତ ମୋର କୂଟନୀତିର ଫଳ । ମୁଁ ଅପରାଧୀ ଅଟେ ।'' ଏହିପରି ଚିନ୍ତା କରି ତାଙ୍କ ଆଖିରୁ ଧାର ଧାର ଲୁହ ବହିବାକୁ ଲାଗିଲା । ସେ ଭଗବାନଙ୍କର ଚରଣରେ ଲୋଟିଗଲେ । ଭଗବାନ ତାହାଙ୍କୁ ତଳୁ ଉଠାଇ ହୃଦୟରେ ଲଗାଇଲେ ।

ହନୁମାନ କହିଲେ, ''ପ୍ରଭୁ ! ମୁଁ ଗୋଟାଏ ପଶୁ, ସାଧାରଣ ଜୀବ । ଆପଣଙ୍କୁ ମୁଁ ଭୁଲିଯାଇଛି । ତା'ଛଡ଼ା ଅପରାଧ କରିବା ମୋ ପକ୍ଷରେ ସ୍ୱାଭାବିକ

ଅଟେ, କିନ୍ତୁ ଆପଣ କିପରି ମୋତେ ଭୁଲିଗଲେ ? ମୁଁ ଆପଣଙ୍କ ଆଜ୍ଞାରେ ସୁଗ୍ରୀବଙ୍କ ପାଖରେ ରହି ବହୁଦିନରୁ ଆପଣଙ୍କୁ ଅପେକ୍ଷା କରୁଛି । ସୁଗ୍ରୀବ ଅତ୍ୟନ୍ତ ଦୁଃଖୀ । ମୁଁ ତାହାଙ୍କୁ ଆପଣଙ୍କ ପରିଚୟ ଦେଇ ଧୈର୍ଯ୍ୟ ଧରାଇ ରଖାଇଛି । ବର୍ତ୍ତମାନ ଆପଣ ତାହାଙ୍କର ମିତ୍ରତା ସ୍ୱୀକାର କରନ୍ତୁ ଏବଂ ତାହାଙ୍କର ବିପତ୍ତି ମୋଚନ କରିବା ସହିତ ତାଙ୍କର ସେବା ଗ୍ରହଣ କରନ୍ତୁ ।'' ତାପରେ ହନୁମାନ ଅତ୍ୟନ୍ତ ଆନନ୍ଦିତ ହୋଇ ଦୁଇଭାଇଙ୍କୁ ଦୁଇ କାନ୍ଧରେ ବସାଇ ସୁଗ୍ରୀବଙ୍କ ନିକଟକୁ ନେଇଗଲେ ।

ରାମ ଓ ସୁଗ୍ରୀବଙ୍କର ମିତ୍ରତା ହେଲା । ସେମାନେ ଅଗ୍ନିଙ୍କୁ ସାକ୍ଷୀ ରଖି ମିତ୍ରତା ସମ୍ବନ୍ଧ ସ୍ଥାପନ କଲେ । ବାଳିଙ୍କୁ ପଶୁଜନ୍ମରୁ ଉଦ୍ଧାର କରି ସୁଗ୍ରୀବଙ୍କୁ ବାନରମାନଙ୍କର ରାଜା କଲେ । ଚତୁର୍ମାସ୍ୟା କାଳଟି ରାମ ଓ ଲକ୍ଷ୍ମଣ ପ୍ରସ୍ରବଣ (ବା ପ୍ରବର୍ଷଣ) ଗିରି ଉପରେ ନିବାସ କରି ରହିଲେ । ଏ ଭିତରେ ସୁଗ୍ରୀବ ଭୋଗବିଳାସରେ ମାତି ରାମଙ୍କର କଥା ଭୁଲିଗଲେ, କିନ୍ତୁ ହନୁମାନ କିପରି ଭୁଲିବେ ? ସେ ବାରମ୍ବାର ସୁଗ୍ରୀବଙ୍କୁ ବୁଝାଇବାକୁ ଚେଷ୍ଟା କଲେ, କିନ୍ତୁ ସୁଗ୍ରୀବ ଶୁଣି ନ ଶୁଣିଲା ପରି ରହିଗଲେ । ସେ ନିଜ କାମରେ ଲାଗି ରହିଲେ । ସୁଗ୍ରୀବଙ୍କୁ ରାମକାର୍ଯ୍ୟ ଉପେକ୍ଷା କରିବାର ଦେଖି ଲକ୍ଷ୍ମଣ ଅତ୍ୟନ୍ତ କ୍ରୋଧିତ ହେଲେ । ଯାହାହେଉ ତାରା ତାଙ୍କର କ୍ରୋଧକୁ ପ୍ରଶମିତ କଲେ ଏବଂ ମନ୍ତ୍ରୀ ହନୁମାନଙ୍କ ପ୍ରୟାସରେ ବାନରସେନା ଏକତ୍ରିତ ହୋଇଗଲେ । ଏହି ପ୍ରକାର ଯୋଜନା ଦେଖି ଲକ୍ଷ୍ମଣ ସୁଗ୍ରୀବଙ୍କ ଉପରେ ପ୍ରସନ୍ନ ହେଲେ । ସୁଗ୍ରୀବ ରାମଙ୍କ ପାଖକୁ ଆସି ନିଜର ଭୁଲ ପାଇଁ କ୍ଷମା ମାଗିଲେ । ସେ ରାମଙ୍କ ଆଗରେ ଦେଶଦେଶାନ୍ତରର ବର୍ଣ୍ଣନା କରି ସୀତାଙ୍କୁ ଖୋଜିବା ପାଇଁ ବାନର ସୈନ୍ୟମାନଙ୍କୁ ନିର୍ଦ୍ଦେଶ ଦେଲେ । ସୀତାଙ୍କ ସମ୍ବନ୍ଧରେ ଏକଥା ତ ଜଣାଥିଲା ଯେ, ରାବଣ ତାହାଙ୍କୁ ଦକ୍ଷିଣଦିଗକୁ ନେଇଯାଇଛି । କିନ୍ତୁ ବାନରସେନାଙ୍କୁ ସବୁ ଆଡ଼କୁ ପଠାଇବାର ଏହି ଉଦ୍ଦେଶ୍ୟ ଥିଲା ଯେ, ରାବଣ ଯଦି ଅନ୍ୟ କୌଣସିଠାରେ ସୀତାଙ୍କୁ ରଖିଥାଏ, ତାହାର ଅନୁସଂଧାନ କରିବା ଏବଂ ଅଧିକ ବାନରସେନାଙ୍କୁ ଏକତ୍ରିତ କରିବା । ସୁଗ୍ରୀବ କଠୋର ଶାସନବାଣୀରେ କହିଲେ, ''ଆଜିଠାରୁ ଏକ ମାସ ମଧ୍ୟରେ ସୀତାଙ୍କ ଖବର ନ ନେଇ ଆସିଲେ, କଠୋର ଦଣ୍ଡ ପ୍ରଦାନ କରାଯିବ ।'' ତେଣୁ ବାନରମାନେ ଭିନ୍ନ ଭିନ୍ନ ଦେଶକୁ ଯାତ୍ରା କଲେ ।

ଦକ୍ଷିଣଦିଗରେ ଅନ୍ୱେଷଣ କରିବା କାମ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେଥିପାଇଁ ସେହି ଦାୟିତ୍ୱ ମୁଖ୍ୟ ମୁଖ୍ୟ ବାନର ବୀରମାନଙ୍କ ଉପରେ ଦିଆଗଲା । ଜାମ୍ବବାନ, ହନୁମାନ, ଅଙ୍ଗଦ, ନଳ, ନୀଳ ଆଦିଙ୍କୁ ଡକାଇ ଏହି

କାମର ଗୁରୁତ୍ୱ ବିଷୟରେ ଆଲୋଚନା କରାଗଲା । ସୁଗ୍ରୀବଙ୍କ ମନରେ ବିଶ୍ୱାସ ଆସିଲା ଯେ, ସେହି ବୀରମାନେ ଅବଶ୍ୟ ଉକ୍ତ କାମ ପୂର୍ଣ୍ଣ କରିବେ । ବିଶେଷ କରି ହନୁମାନଙ୍କ ପକ୍ଷରେ କୌଣସି କାମ ଅସମ୍ଭବ ନୁହେଁ । ସେ ଅତ୍ୟନ୍ତ ପ୍ରସନ୍ନ ହୋଇ କହିଲେ, "ହନୁମାନ ! ଜଳ, ସ୍ଥଳ ଓ ଆକାଶ ସର୍ବତ୍ର ତୁମର ଏକା ପ୍ରକାର ଗତି । ସ୍ୱର୍ଗ ଏବଂ ଅନ୍ତରୀକ୍ଷରେ ଏପରି କୌଣସି ଶକ୍ତି ନାହିଁ, ଯେ କି ତୁମର ପ୍ରତିରୋଧ କରିପାରିବ । ତୁମେ ତୁମ ପିତାଙ୍କ ପରି ଗତି, ବେଗ, ତେଜ ଓ ସ୍ଫୂର୍ତ୍ତିଯୁକ୍ତ ଅଟ । ତୁମେ ସବୁକିଛି ଜାଣ, ତୁମକୁ ବା ମୁଁ କଣ କହିବି ! କେବଳ ସ୍ଥାନ ଦେଖିବା ତ ତୁମର କାମ ନୁହେଁ, ତୁମେ ସୀତାଙ୍କର ଠାବ କରିବା ଉଚିତ । ମୋର ତୁମ ଉପରେ ପୂର୍ଣ୍ଣବିଶ୍ୱାସ ରହିଛି ଯେ, ତୁମେ ସୀତାଙ୍କର ଠାବ କରି ଫେରିବ ।"

ସୁଗ୍ରୀବଙ୍କର କଥା ଶୁଣି ଭଗବାନ ରାମ ହନୁମାନଙ୍କୁ ଡକାଇଲେ । ଭଗବାନ ତ ପ୍ରଥମରୁ ହିଁ ଜାଣିଥିଲେ, କିନ୍ତୁ ସୁଗ୍ରୀବଙ୍କର କଥାରେ ତାହାଙ୍କର ପୂର୍ବସ୍ମୃତି ଫେରି ଆସିଲା । ସେ ହନୁମାନଙ୍କୁ କହିଲେ, "ହନୁମାନ ! ତୁମେ ମୋର କାର୍ଯ୍ୟ ଅବଶ୍ୟ ପୂର୍ଣ୍ଣ କରିବ । ମୋର ଏହି ମୁଦ୍ରିକାଟି ନେଇଯାଅ । ଏହାକୁ ଦେଖି ସୀତା ବିଶ୍ୱାସ କରିବେ ଯେ, ତୁମେ ମୋର ଦୂତ ।" ସୀତାଙ୍କୁ କହିବା ପାଇଁ ସେ କିଛି ଖବର ବି ଦେଲେ । ହନୁମାନ ଓ ଅନ୍ୟମାନେ ଭଗବାନଙ୍କର ଚରଣ ସ୍ପର୍ଶ କରି ବାହାରି ପଡ଼ିଲେ ।

卐 卐 卐 卐

ହନୁମାନ, ଜାମ୍ବବାନ, ଅଙ୍ଗଦ ଆଦି ସୀତାଙ୍କୁ ଖୋଜି ଖୋଜି ଥକିଗଲେ । ଭୋକ ଉପାସରେ କ୍ଳାନ୍ତ ହୋଇଗଲେ । କୌଣସି ସ୍ଥାନରେ ପାଣି ଟିକିଏ ବି ମିଳିଲା ନାହିଁ । ଅନେକ ଦିନ ପର୍ଯ୍ୟନ୍ତ ଫଳଟିଏ ବି ମିଳିଲା ନାହିଁ । ସମସ୍ତ ଦାୟିତ୍ୱ ହନୁମାନଙ୍କ ଉପରେ ପଡ଼ିଲା । ସେ ଗୋଟିଏ ଉଚ୍ଚ ପର୍ବତ ଶୃଙ୍ଗ ଉପରେ ଚଢ଼ି ଦେଖିଲେ, ଅଦୂରରେ ସବୁଜ ରଙ୍ଗର କିଛି ଦେଖା ଯାଉଛି । ସୁନ୍ଦର ସୁନ୍ଦର ପକ୍ଷୀ ସେମାନଙ୍କର ଡେଣାରୁ ପାଣି ଛିଞ୍ଚାଡ଼ି ଉଡ଼ି ଆସୁଥିବାର ବି ଦେଖାଗଲା । ସେ ଅନୁମାନ କଲେ, ତାହା କୌଣସି ଏକ ସୁନ୍ଦର ବଗିଚା ବା ଜଳାଶୟ ହେବ । ସମସ୍ତଙ୍କୁ ନେଇ ସେ ସେଠାକୁ ଗଲେ । ସେଠାରେ ଦେଖିଲେ, ପକ୍ଷୀମାନେ ଗୋଟିଏ ଗୁମ୍ଫା ଭିତରୁ ବାହାରୁଛନ୍ତି । ଏକ ଅନ୍ୟର ହାତ ଧରି, ଭଗବାନ ରାମଙ୍କର ନାମ ନେଇ ସମସ୍ତେ ଗୁମ୍ଫା ମଧ୍ୟରେ ପ୍ରବେଶ କଲେ । ଅତ୍ୟନ୍ତ ସୁନ୍ଦର ଗୁମ୍ଫା । ସେଠାରେ ଝରଣାରେ ଅମୃତମୟ ଜଳ ଓ ଝରଣା କୂଳରେ ସୁବର୍ଣ୍ଣ ପରି ସୁନ୍ଦର ବୃକ୍ଷରେ ସ୍ୱାଦିଷ୍ଟ

ଫଳ ଥିଲା । ସେଠାରେ ଥିବା ତପସ୍ୱିନୀଙ୍କର ଅନୁମତି ନେଇ ସମସ୍ତେ ଖାଇ ପିଇ ସୁସ୍ଥ ହେଲେ ।

ସେହି ତପସ୍ୱିନୀ ପଗ୍ଚରିବାରୁ ହନୁମାନ ସମସ୍ତ ବୃତ୍ତାନ୍ତ କହିଲେ । ତାପରେ ସମସ୍ତେ ସେଠାରୁ ଫେରିବାର ଇଚ୍ଛା ପ୍ରକାଶ କରିବାରୁ ତପସ୍ୱିନୀ କହିଲେ, ''ଭାଇମାନେ, ଏଠାକୁ ଆସିଲେ କେହି ଜୀବିତ ଅବସ୍ଥାରେ ଫେରି ଯାଆନ୍ତି ନାହିଁ । ଏହା ନିର୍ବିଘ୍ନ ତପସ୍ୟା କରିବାର ସ୍ଥାନ । ଯଦି ଲୋକମାନେ ଏଠାରୁ ଫେରି ଯାଆନ୍ତି, ତେବେ ତପସ୍ୟାରେ ବିଘ୍ନ ଘଟେ । କିନ୍ତୁ ତୁମେ ମୋତେ ଭଗବାନ ରାମଙ୍କ କଥା ଶୁଣାଇଲ । ସେଥିପାଇଁ ତପସ୍ୟାବଳରେ ମୁଁ ତୁମ୍ଭମାନଙ୍କୁ ଏଠାରୁ ନେଇଯିବି । ମୋତେ ମଧ୍ୟ ଭଗବାନ ରାମଙ୍କୁ ଦର୍ଶନ କରିବା ନିମିତ୍ତ ପ୍ରସ୍ରବଣ ଗିରିକୁ ଯିବାକୁ ହେବ । ଆଚ୍ଛା, ବର୍ତ୍ତମାନ ତୁମ୍ଭେମାନେ ସମସ୍ତେ ଆଖି ବନ୍ଦ କର ।'' ବାନର ଓ ଭାଲୁମାନେ ନିଜ ନିଜ ହାତରେ ଆଖି ବନ୍ଦ କରିଦେଲେ । କ୍ଷଣକ ମଧ୍ୟରେ ସେମାନେ ଦେଖିଲେ ଯେ, ସମସ୍ତେ ଆସି ସମୁଦ୍ରକୂଳରେ ଗୋଟିଏ ଉଚ୍ଚ ପର୍ବତ ଉପରେ ଠିଆ ହୋଇଛନ୍ତି । ହନୁମାନଙ୍କ ଠାରୁ ଅନୁମତି ନେଇ ସେହି ତପସ୍ୱିନୀ ଭଗବାନ ରାମଙ୍କୁ ଦର୍ଶନ କରିବା ନିମିତ୍ତ ଗ୍ଚଲିଗଲେ ।

卐 卐 卐 卐

ଅଙ୍ଗଦ କହିଲେ—''ଭାଇମାନେ ! ବର୍ତ୍ତମାନ ଏକମାସ ଅତୀତ ହୋଇଗଲା । ଆମ୍ଭେମାନେ ଜନକନନ୍ଦିନୀ ସୀତାଙ୍କର ଠାବ କରି ପାରିଲେ ନାହିଁ । ବର୍ତ୍ତମାନ ଫେରିଗଲେ ସୁଗ୍ରୀବ ନିଶ୍ଚୟ ମୋତେ ମାରିଦେବେ । ତେଣୁ ମୁଁ ଏହିଠାରେ ତପସ୍ୟା କରିବି; ତୁମ୍ଭେମାନେ ଯାଅ । ହନୁମାନ କହିଲେ, ''ଯୁବରାଜ ! ଆପଣ କଣ ଏପରି କହୁଛନ୍ତି ! ସୁଗ୍ରୀବ ଆପଣଙ୍କୁ ଅତ୍ୟନ୍ତ ଭଲ ପାଆନ୍ତି । ଆପଣ ଭଗବାନ ରାମଙ୍କର କାର୍ଯ୍ୟସିଦ୍ଧି ପାଇଁ ପ୍ରାଣପଣେ ଚେଷ୍ଟା କରନ୍ତୁ । ଗୁମ୍ଫା ମଧ୍ୟରେ ପ୍ରବେଶ କରିବାରୁ ଆମର ବିଳମ୍ବ ହୋଇଗଲା । ସେ ନିଶ୍ଚୟ ଆମ୍ଭମାନଙ୍କୁ ରକ୍ଷା କରିବେ ଏବଂ ଆପଣଙ୍କୁ ରାଜା କରିବେ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଭଗବାନ ରାମ ଅତ୍ୟନ୍ତ ଦୟାଳୁ । ସେ ସର୍ବଦା ଆପଣଙ୍କୁ ରକ୍ଷା କରିବେ । ଗ୍ଚଲନ୍ତୁ, ଆମ୍ଭେମାନେ ନିଜର ଶକ୍ତି ଅନୁସାରେ ତାଙ୍କର ଆଜ୍ଞା ପାଳନ କରିବା । ଯଦି ଆପଣ ସୁଗ୍ରୀବଙ୍କ ସହିତ ଦ୍ୱେଷ କରନ୍ତି, ସେ ରାଜା ହେବାରୁ ଆପଣ ଯଦି ଦୁଃଖ ପ୍ରକାଶ କରୁଛନ୍ତି ଏବଂ ଏଠାରେ ରହି ଆପଣ ବଞ୍ଚିବାକୁ ଇଚ୍ଛା କରୁଆନ୍ତି, ତେବେ ଜାଣନ୍ତୁ, ତାହା କଦାପି ସମ୍ଭବ ହୋଇପାରିବ ନାହିଁ । ଆପଣ ରାମଙ୍କ କାମରେ ହେଳା

କରି ଯେଉଁଠାରେ ଲୁଚିଲେ ମଧ୍ୟ ଲକ୍ଷ୍ମଣଙ୍କ ବାଣରୁ କଦାପି ବର୍ଞ୍ଚି ପାରିବେ ନାହିଁ । ତାଙ୍କର କାମ ନ କରି ଯଦି ବର୍ଞ୍ଚି ନ ପାରିବେ, ତେବେ ତାହାଙ୍କ ପାଖକୁ ଚ୍ଛଲିଯିବା ଉଚିତ । ସେ ଯେପରି ଇଚ୍ଛା କରିବେ, ସେପରି ହେବ ।''
ହନୁମାନଙ୍କ କଥା ଶୁଣି ଅଙ୍ଗଦ ଜୀବିତ ରହିବାର ସଂକଳ୍ପ ଛାଡ଼ିଦେଲେ । କିନ୍ତୁ ସୁଗ୍ରୀବଙ୍କ ପାଖକୁ ଯିବା ଅପେକ୍ଷା ସେଠାରେ ଅନଶନ କରି ପ୍ରାଣତ୍ୟାଗ କରିବା ଭଲ ବୋଲି ସ୍ଥିର କଲେ । ତେଣୁ ତାହାଙ୍କ ସହିତ ସମସ୍ତେ ଅନଶନ କଲେ ।

ଏହି ସମୟରେ ସମ୍ପାତିଙ୍କର ଦେଖା ମିଳିଲା । ତାହାଙ୍କୁ ସୀତାଙ୍କ ସମ୍ବାଦ ଜଣାଥିଲା । ସମସ୍ତ ବାନର ଓ ଭାଲୁ ସମୁଦ୍ରତଟରେ ଏକତ୍ରିତ ହେଲେ । ସମ୍ପାତିଙ୍କଠାରୁ ସୀତାଙ୍କ ସମ୍ବାଦ ପାଇ କିଏ ସମୁଦ୍ର ଲଂଘନ କରି ଲଙ୍କା ଯାଇପାରିବ, ସେ ସମ୍ବନ୍ଧରେ ବିଚ୍ଛର ହେଲା । ଅଙ୍ଗଦଙ୍କର ତେଜସ୍ୱୀ ଭାଷଣ ପରେ ଜଣ ଜଣ କରି ସମସ୍ତେ ନିଜ ନିଜର ଶକ୍ତି ବର୍ଣ୍ଣନା କଲେ ଏବଂ ସମୁଦ୍ର ଲଂଘିବାକୁ ଅସମର୍ଥତା ଜଣାଇଲେ । ଅଙ୍ଗଦ କହିଲେ, ''ମୁଁ କୌଣସି ପ୍ରକାରେ ସମୁଦ୍ର ପାର ହୋଇଯିବି, କିନ୍ତୁ ଫେରି ଆସିପାରିବା ସନ୍ଦେହ ।'' ଜାମ୍ବବାନ ତାହାଙ୍କୁ ଯୁବରାଜ କହି ସମ୍ମାନିତ କଲେ ଏବଂ ତାଙ୍କର ଯିବାକୁ ବିରୋଧ କଲେ । ସେ ନିଜେ ମଧ୍ୟ ବୃଦ୍ଧାବସ୍ଥା କାରଣରୁ ଯିବା ପାଇଁ ଅସମର୍ଥତା ପ୍ରକାଶ କଲେ । ସେପର୍ଯ୍ୟନ୍ତ ହନୁମାନ ଚୁପ୍‌ଚ୍ଛପ୍ ବସିଥିଲେ । ସେ ଗୋଟିଏ କୋଣରେ ବସି ସମସ୍ତଙ୍କର କଥା ଶୁଣୁଥିଲେ । ଅଙ୍ଗଦ ନିରାଶ ହୋଇଗଲେ । ସୀତାଙ୍କ ସମ୍ବାଦ ମିଳିବା ପରେ ବାନରମାନଙ୍କ ମଧ୍ୟରେ ଯେଉଁ ପ୍ରସନ୍ନତା ଆସିଥିଲା, ତାହା ଉଭେଇ ଗଲା । ଜାମ୍ବବାନ ଅଙ୍ଗଦଙ୍କୁ ସମ୍ବୋଧନ କରି କହିଲେ, ''ଯୁବରାଜ ! ନିରାଶ ହେବାର କୌଣସି କାରଣ ନାହିଁ । ସମୁଦ୍ର ପାରି ହେବା ନିମିତ୍ତ କେବଳ ବଳର ଆବଶ୍ୟକତା ନୁହେଁ, ବିଶାଳ ବୁଦ୍ଧିର ମଧ୍ୟ ଆବଶ୍ୟକତା ରହିଛି । ଏହି କାର୍ଯ୍ୟ ନିମିତ୍ତ ସ୍ୱୟଂ ଦେବାଧିଦେବ ତାଙ୍କର ଅବତାର ଗ୍ରହଣ କରିଛନ୍ତି । ରାକ୍ଷସଙ୍କର ସଂହାର ଅବଶ୍ୟମ୍ଭାବୀ ।'' ସେ ହନୁମାନଙ୍କୁ ଦେଖାଇ କହିଲେ—''ହନୁମାନ ! ତୁମେ କାହିଁକି ଚୁପ୍‌ଚ୍ଛପ୍ ବସିଛ ? ତୁମ ଜନ୍ମ ରାମଙ୍କ କାମ କରିବା ପାଇଁ ହୋଇଛି । ବାୟୁନନ୍ଦନ ! ତୁମେ ତୁମ ପିତାଙ୍କ ପରି କ୍ଷଣକରେ ସମୁଦ୍ର ପାର ହୋଇ ପାରିବ । ତୁମର ବୁଦ୍ଧିର କଳନା ନାହିଁ । ତୁମେ ବିବେକ ଓ ଜ୍ଞାନର ସାଗର । ତୁମେ ତୁମ ମଧ୍ୟରେ ଏତେ ବଳ ରଖି ଚୁପ୍‌ଚ୍ଛପ୍ ହୋଇ କିପରି ବସିଛ ?'' ହନୁମାନଙ୍କର ଜନ୍ମ, ଦେବତାମାନଙ୍କ ବରଦାନ, ଋଷିମାନଙ୍କର ଶାପ କଥା

କହି ଜାମ୍ବବାନ ସ୍ମରଣ କରାଇ ଦେଲେ ଯେ, ହନୁମାନ ଯାହା ଇଚ୍ଛା କରିବେ, ତାହା କରି ପାରିବେ ।

ହନୁମାନ ସର୍ବଦା ଭଗବାନ ରାମଙ୍କର ସ୍ମରଣରେ ତନ୍ମୟ ରହିଥିଲେ । ତାଙ୍କୁ ନିଜର ବଳ ଓ ଶକ୍ତିର ସ୍ମରଣ ନ ଥିଲା । ଜାମ୍ବବାନଙ୍କର କଥା ଶୁଣି ତାଙ୍କୁ ଜଣାଗଲା ଯେ, ତାଙ୍କର ଅପାର ଶକ୍ତି ଅଛି । ସେ କହିଲେ, "ମୋ ଉପରେ ଭଗବାନଙ୍କର ଅସୀମ କୃପା ଓ ଭଗବାନଙ୍କର ସମସ୍ତ ଶକ୍ତି ମୋର ଶକ୍ତି ଅଟେ ।" ଦେଖୁ ଦେଖୁ ତାଙ୍କର ଶରୀର ବଢ଼ି ସୁମେରୁ ପର୍ବତପରି ହୋଇଗଲା । ସେ ଗର୍ଜନ କରି କହିଲେ, "ଏ ସମୁଦ୍ର କଥା କଣ କହୁଛ, ଭଗବାନ ରାମଙ୍କ କୃପାରେ ଶହେ ସମୁଦ୍ର ଲଂଘି ପାରିବା ପାଇଁ ମୁଁ ସମର୍ଥ । ଯଦି ଲଙ୍କାରେ ସୀତାଙ୍କ ଠାବ ନ ମିଳେ, ତେବେ ସ୍ୱର୍ଗରୁ ଆରମ୍ଭ କରି ବ୍ରହ୍ମଲୋକ ପର୍ଯ୍ୟନ୍ତ ମୁଁ ସର୍ବତ୍ର ଟିକିନିଖି ଖୋଜିଦେବି । ଲଙ୍କା ସହିତ ତ୍ରିକୂଟ ପର୍ବତକୁ ଉପାଡ଼ି ନେଇ ଆସିବି । ରାବଣକୁ ଟିକି ଟିକି କରି ମାରିଦେବି । ଏପରି କୌଣସି ଶକ୍ତି ନାହିଁ, ଯାହା ଭଗବାନ ରାମଙ୍କର କାମ କରିବାରେ ମୋ ପଥରେ ପ୍ରତିବଂଧକ ସୃଷ୍ଟି କରିପାରିବ ।" ହନୁମାନଙ୍କର ଗର୍ଜନ ଶୁଣି ସମସ୍ତ ବାନରସେନା ଆନନ୍ଦ ଉଲ୍ଲାସରେ ହର୍ଷନାଦ କରିବାକୁ ଲାଗିଲେ । ଜାମ୍ବବାନ କହିଲେ, "ହନୁମାନ ! ତୁମେ ସବୁକିଛି କରିପାରିବ କିନ୍ତୁ ଏ ସମୟରେ ସେସବୁ କରିବାର କିଛି ଆବଶ୍ୟକତା ନାହିଁ । ତୁମେ କେବଳ ସୀତାଙ୍କୁ ଠାବ କରି ଆସ । ଭଗବାନ ରାମଙ୍କ ସହିତ ଆମେ ସମସ୍ତେ ଲଙ୍କାକୁ ଯିବା । ଭଗବାନ ରାମଙ୍କ ବାଣରେ ରାକ୍ଷସମାନଙ୍କର ଉଦ୍ଧାର ହେବ । ରାମଙ୍କର କୀର୍ତ୍ତି ବିସ୍ତାର ହେବ । ଆମେ ସମସ୍ତେ ଉତ୍ସବ ପାଳନ କରିବା ।" ଜାମ୍ବବାନଙ୍କର କଥା ଶୁଣି ହନୁମାନ ଲମ୍ଫ ପ୍ରଦାନ କରି ଗୋଟିଏ ଉଚ୍ଚ ପର୍ବତ ଉପରକୁ ଚଢ଼ିଗଲେ । ତାଙ୍କର ପାଦର ଆଘାତରେ ବଡ଼ ବଡ଼ ପର୍ବତ ଶୃଙ୍ଗ ଭାଙ୍ଗି ତଳେ ପଡ଼ିଗଲା । ତାଙ୍କର ଲାଂଜର ଆଘାତରେ ବଡ଼ ବଡ଼ ବୃକ୍ଷ ଉପୁଡ଼ି ଆକାଶରେ ଉଡ଼ିବାକୁ ଲାଗିଲା । ସେଥିରୁ ବହୁତ ଫୁଲ ଝଡ଼ି ହନୁମାନଙ୍କ ଉପରେ ପଡ଼ିଲା । ବୃକ୍ଷମାନେ ହନୁମାନଙ୍କୁ ପୂଜା କରିବା ପରି ଜଣାପଡ଼ିଲା । ଦେବତାମାନେ ଜୟଜୟକାର କରିବାକୁ ଲାଗିଲେ । ଋଷିମାନେ ଶାନ୍ତି ପାଠ କଲେ । ବାୟୁ ସହାୟତା କଲେ । ସମୁଦ୍ର ପାର ହୋଇ ଯିବାକୁ ହନୁମାନ ଲମ୍ଫ ଦେଲେ । ସେ ଭଗବାନଙ୍କୁ ସ୍ମରଣ କରି, ବାନରମାନଙ୍କୁ ଆଶ୍ୱାସନା ଦେଇ କହିଲେ, "ମୋ ମନରେ ବଡ଼ ଉତ୍ସାହ, ବଡ଼ ଆନନ୍ଦ ଯେ, ମୁଁ ଭଗବାନଙ୍କ ଅସୀମ କୃପା ଅନୁଭବ କରୁଛି । ମୁଁ ଭଗବାନଙ୍କର କାମ ପୂର୍ଣ୍ଣ କରି ଶୀଘ୍ର ଫେରି ଆସିବି । ତୁମେମାନେ ବ୍ୟସ୍ତ ହେବ ନାହିଁ ।"

ପୁଣି ଥରେ ଭଗବାନଙ୍କର ଜୟଧ୍ୱନି କରି ସେ ଉଡ଼ିଗ୍ଲେ। ତାହାଙ୍କ ବେଗରେ ପ୍ରଭାବିତ ହୋଇ ବହୁତ ବୃକ୍ଷ ଉପୁଡ଼ି ତାହାଙ୍କ ସହିତ ଉଡ଼ିବାକୁ ଲାଗିଲେ। ଭେଲା ଭେଲା ମେଘ ତାହାଙ୍କ ଶରୀରର କଠୋର ଧକ୍କାରେ ଛିନ୍ନଭିନ୍ନ ହୋଇଗଲେ ଏବଂ ତାହାଙ୍କ ଶରୀର ଉପରେ କରକାରୂପକ ଶୀତଳ ବିନ୍ଦୁ ବର୍ଷା କଲେ। ବାୟୁନନ୍ଦନ କୌଣସି ଆଡ଼େ ନ ଗ୍ୱହିଁ ସିଧା ଆକାଶ ମାର୍ଗରେ ଗ୍ୱଲିଲେ।

ସମୁଦ୍ର ଚିନ୍ତା କଲେ, "ରାମଙ୍କର ପୂର୍ବପୁରୁଷମାନେ ମୋତେ ଏହି ରୂପ ଦାନ କରିଛନ୍ତି, କିନ୍ତୁ ମୁଁ ତାହାଙ୍କର କୌଣସି ଉପକାର କରି ନାହିଁ। ଭଗବାନ ରାମଙ୍କ ମନରେ ଏପରି କଥା ନ ଆସୁ ଯେ, ସୀତାଙ୍କ ହରଣରେ ସମୁଦ୍ର ସହାୟତା କରୁଛି, କାରଣ ରାବଣ ଏକ ପ୍ରକାର ମୋ ମଧ୍ୟରେ ରହିଛି। ମୁଁ ତାହାର ଦୁର୍ଗର ଖାଇ ଅଟେ। ଯଦି ମୁଁ ରାମଙ୍କର ଦୂତଙ୍କୁ ସ୍ୱାଗତ କରିବି, ତାଙ୍କର ବିଶ୍ରାମ ପାଇଁ କିଛି ବ୍ୟବସ୍ଥା କରିବି, ତେବେ ଏହି ଲାଞ୍ଛନାରୁ ମୁକ୍ତ ହୋଇ ପାରିବି।" ଏପରି ଚିନ୍ତା କରି ସେ ମୈନାକ ପର୍ବତକୁ କହିଲେ, "ଭଗବାନ ରାମଙ୍କ ଦୂତ ଆସୁଛନ୍ତି। ତାଙ୍କୁ ସ୍ୱାଗତ ଜଣାଇବାକୁ ବ୍ୟବସ୍ଥା କର। ମୈନାକ ଅତ୍ୟନ୍ତ ବିଶାଳ ରୂପ ଧାରଣ କରି ସମୁଦ୍ର ଉପରକୁ ଉଠି ଆସିଲେ। ହନୁମାନ ଭାବିଲେ, ଏହା କୌଣସି ବିଘ୍ନ ହୋଇଥିବ। ତେଣୁ ସେ ନିଜର ପାଦ ପ୍ରହାରରେ ତାହାକୁ ପାତାଳଗାମୀ କରିବାକୁ ଯାଉଥିଲେ। ମୈନାକ ମନୁଷ୍ୟ ରୂପ ଧରି ଶୃଙ୍ଗ ଉପରେ ଛିଡ଼ା ହୋଇଗଲେ ଏବଂ ଯୋଡ଼ହସ୍ତରେ ନିବେଦନ କଲେ, "ହନୁମାନ! ତୁମେ ମୋର ସଖା ବାୟୁଙ୍କର ପୁତ୍ର। ଯେତେବେଳେ ଇନ୍ଦ୍ର ନିଜର ବଜ୍ର ଦ୍ୱାରା ପର୍ବତମାନଙ୍କର ପକ୍ଷଚ୍ଛେଦନ କଲେ, ସେତେବେଳେ ତୁମର ପିତାଙ୍କ ସହାୟତାରେ ମୁଁ ସମୁଦ୍ରରେ ଆସି ପଶିଲି ଏବଂ ନିଜକୁ ବଞ୍ଚାଇଲି। ମୁଁ ତୁମ୍ଭଙ୍କୁ ବିଶ୍ରାମ ଦେବା ପାଇଁ ଇଚ୍ଛା କରୁଛି। ବିଶ୍ରାମ ନିଅ, କିଛି ସମୟ କ୍ଳାନ୍ତି ଦୂର କରି ପୁଣି ଯାତ୍ରା କରିବ। ଭଗବାନ ରାମଙ୍କର କାମ ତ ସାରା ସଂସାରର କାମ। ତାହାଙ୍କର ଦୂତଙ୍କର ସହାୟତା କରିବା, ସାରା ଜଗତର ସହାୟତା କରିବା ସଙ୍ଗେ ସମାନ। ଆଶା ଓ ବିଶ୍ୱାସ, ତୁମେ ମୋର ପ୍ରାର୍ଥନା ସ୍ୱୀକାର କରିବ।"

ହନୁମାନ ବଡ଼ ପ୍ରେମରେ, ଅତ୍ୟନ୍ତ ଆନନ୍ଦରେ ନିଜ ହାତରେ ମୈନାକକୁ ସ୍ପର୍ଶ କଲେ ଏବଂ କହିଲେ, "ମୈନାକ! ତୁମେ ମୋତେ ଅତ୍ୟନ୍ତ ସ୍ନେହ କରୁଛ। ତୁମେ ମୋର ପିତାଙ୍କ ପରି ବନ୍ଦନୀୟ ଅଟ। ତୁମର ଆଜ୍ଞା ପାଳନ କରିବା ମୋ ପକ୍ଷେ ଉଚିତ, କିନ୍ତୁ ବର୍ତ୍ତମାନ ଭଗବାନ ରାମଙ୍କ କାମରେ ଯାଉଛି, ମୋର ହୃଦୟ ତାହାଙ୍କର କାମ କରିବା ପାଇଁ ଆଶାକ୍ରାନ୍ତ ଅଟେ।

ଯଦି ବିଶ୍ରାମ କରିବା ପାଇଁ ମୁଁ ମୋର ଶରୀରକୁ ଅଟକାଇ ଦିଏ, ତେବେ ଖୁବ୍ ସମ୍ଭବ ମୋର ହୃଦୟ ଶରୀରକୁ ଛାଡ଼ି ଲଙ୍କାରେ ପହଞ୍ଚିଯିବ । ଏହି ସମୟରେ ମୁଁ କ୍ଷଣେମାତ୍ର ବିଶ୍ରାମ କରିବାକୁ ଚାହେଁ ନାହିଁ । ମୋତେ କ୍ଷମା କର ।'' ଏହା କହି ହନୁମାନ ଅଗ୍ରସର ହେଲେ ।

ଦେବତାମାନେ ଚିନ୍ତା କଲେ, ହନୁମାନଙ୍କର ବଳ ତ ଅଛି, ବିଦ୍ୟାର ମଧ୍ୟ କେତେବାର ପରୀକ୍ଷା ହୋଇଛି; କିନ୍ତୁ ଲଙ୍କାରେ ରାକ୍ଷସମାନଙ୍କ ମଧ୍ୟକୁ ଯାଇ କୁଶଳରେ ଫେରିଆସି ପାରିବେ କି ନାହିଁ, ତାହାର ପରୀକ୍ଷା ଥରେ ନେବା ଉଚିତ । ସେମାନେ ଦକ୍ଷପୁତ୍ରୀ ତଥା କଶ୍ୟପଙ୍କ ପତ୍ନୀ ନାଗମାତା ସୁରସାଙ୍କୁ ହନୁମାନଙ୍କୁ ପରୀକ୍ଷା କରିବା ପାଇଁ ପଠାଇଲେ । ସେ ଆସି ହନୁମାନଙ୍କ ବାଟ ଓଗାଳି ଠିଆ ହେଲେ । ସେ କହିଲେ, ''ପ୍ରାରବ୍ଧବଶତଃ ଆଜି ମୋତେ ସୁନ୍ଦର ଭୋଜନ ମିଳିଛି । ମୁଁ ପେଟ ଭରି ଖାଇବି ।'' ହନୁମାନ କହିଲେ, ''ପ୍ରଥମେ ମୋତେ ଭଗବାନ ରାମଙ୍କର କାମ କରିବାକୁ ଦିଅ; ପରେ ଖାଇବ । ମୁଁ ମୃତ୍ୟୁକୁ ଡରୁ ନାହିଁ ।'' କିନ୍ତୁ ସେ ତାହା ଅସ୍ୱୀକାର କରି ମୁଖ ବିସ୍ତାର କରିବାକୁ ଲାଗିଲେ । ସେ ଯେତେ ମୁଖ ବିସ୍ତାର କଲେ, ହନୁମାନ ତାର ଦୁଇଗୁଣ ହୋଇଗଲେ । ଯେତେବେଳେ ସେ ଶହେ ଯୋଜନ ପର୍ଯ୍ୟନ୍ତ ମୁଖ ବିସ୍ତାର କଲେ, ସେତେବେଳେ ହନୁମାନ କ୍ଷୁଦ୍ରରୂପ ଧାରଣ କରି ସୁରସାଙ୍କ ମୁଖ ମଧ୍ୟରେ ପ୍ରବେଶ କରି ସେଠାରୁ ବାହାରି ଆସିଲେ । ହନୁମାନଙ୍କର ବୁଦ୍ଧି ଦେଖି ସୁରସା ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ଭଗବାନଙ୍କର କାର୍ଯ୍ୟରେ ସଫଳ ହୁଅନ୍ତୁ ବୋଲି ଆଶୀର୍ବାଦ କରି ବିଦାୟ ନେଲେ ।

ରାହୁର ମାତା ସିଂହିକା ସମୁଦ୍ରରେ ବାସ କରୁଥିଲା । ଉପରେ ଉଡୁଥିବା ଜୀବଜନ୍ତୁଙ୍କର ଛାୟାରୁ ସେମାନଙ୍କୁ ଧରି ନେବାର ଶକ୍ତି ତାହାର ଥିଲା । ଏହିପରିଭାବରେ ଛାୟାକୁ ଆକର୍ଷଣ କରି ସେ ଅନେକଙ୍କୁ ସଂହାର କରିଥିଲା । ସେ ହନୁମାନଙ୍କ ସହିତ ମଧ୍ୟ ସେହିପ୍ରକାର ଖେଳ ଖେଳି ବସିଲା । ନିଜର ଗତି ବନ୍ଦ ହେବାର ଜାଣି ହନୁମାନ ତଳକୁ ଚାହିଁଦେଲେ । ସେ ରାକ୍ଷସୀକୁ ଚିହ୍ନି ପାରିଲେ । ଗୋଟିଏ ମାତ୍ର ହାଲୁକା ଆଘାତରେ କାମ ସରିଗଲା ଏବଂ ହନୁମାନ ନିର୍ବିଘ୍ନରେ ସମୁଦ୍ରର ଅନ୍ୟ କୂଳରେ ପହଞ୍ଚିଗଲେ । କୂଳରେ ଅତ୍ୟନ୍ତ ସୁନ୍ଦର ବନ ଥିଲା । ସବୁଜ ବୃକ୍ଷ ଏବଂ ସୁଗନ୍ଧିତ ପୁଷ୍ପ, ପକ୍ଷୀମାନଙ୍କର କଳରବ ଏବଂ ଭ୍ରମରମାନଙ୍କର ଗୁଞ୍ଜନ ଶବ୍ଦ ମନୋମୁଗ୍ଧକର ଥିଲା; କିନ୍ତୁ ହନୁମାନ ସେ ସମସ୍ତ ଦେଖି ମଧ୍ୟ ଦେଖି ନ ଥିଲେ । ସେ ଡେଇଁ

ଡେଇଁ ପାହାଡ଼ର ଗୋଟିଏ ଉଚ୍ଚସ୍ଥାନ ଉପରକୁ ଚଢ଼ିଗଲେ । ସେ ସେହି ସ୍ଥାନଟି ଶିବିର ନିର୍ମାଣ ପାଇଁ ଉପଯୁକ୍ତ ସ୍ଥାନ ବୋଲି ବିଗ୍ଭର କଲେ । ସେ ଦେଖିଲେ, ବାନରମାନଙ୍କ ନିମିତ୍ତ ସେଠାରେ ପର୍ଯ୍ୟାପ୍ତ ଫଳ ମିଳିପାରିବ । ମିଠାଜଳ ମଧ୍ୟ ନିକଟରେ ଥାଏ । ସବୁଠାରୁ ବଡ଼ କଥା ଏହି ଯେ, ସେଠାରୁ ଲଙ୍କାପୁରୀ ଦେଖାଯାଉଥିଲା । ହନୁମାନ ସେଠାରୁ ଲଙ୍କାର ବହୁତ କଥା ଦେଖି ପାରିଲେ । ସେ ଲଙ୍କା ଦୁର୍ଗର ଦୁର୍ଗମତାକୁ ଲକ୍ଷ୍ୟ କରି ନିର୍ଣ୍ଣୟ କଲେ ଯେ, ସେଠାର ପ୍ରତ୍ୟେକ କଥା ଟିକିନିଖି ଭାବରେ ଜାଣିବା ଉଚିତ; ସୀତାଙ୍କର ଠାବ କରିବା ସଙ୍ଗେ ସଙ୍ଗେ ସେହି ସମସ୍ତ ଆନୁସଙ୍ଗିକ କାର୍ଯ୍ୟ କରିବା ମଧ୍ୟ ତାଙ୍କର କର୍ତ୍ତବ୍ୟ ।

ଏତେ ବଡ଼ ବିଶାଳ ଶରୀର ନେଇ ଲଙ୍କା ମଧ୍ୟରେ ପ୍ରବେଶ କରିବା ଏବଂ ସେଠାରେ ପ୍ରତ୍ୟେକ କଥା ଭଲଭାବରେ ଜାଣିବା ଅସମ୍ଭବ ଅଟେ । ସେଥିପାଇଁ ମହାବୀର ହନୁମାନ ଅଣିମା ସିଦ୍ଧି ପ୍ରୟୋଗ କରି ନିଜ ଶରୀରକୁ ଛୋଟ କରିଦେଲେ ଏବଂ ଭଗବାନଙ୍କୁ ସ୍ମରଣ କରି ଲଙ୍କାଦ୍ୱାରରେ ପହଞ୍ଚିଲେ । ଲଙ୍କା ନଗରୀର ଅଧିଷ୍ଠାତ୍ରୀ ଦେବୀ ତାଙ୍କୁ ସନ୍ଧ୍ୟା ସମୟରେ ଲଙ୍କା ମଧ୍ୟରେ ଲୁଚି ଲୁଚି ପ୍ରବେଶ କରୁଥିବାବେଳେ ଦେଖିଦେଲେ । ତାଙ୍କ ମନରେ ସନ୍ଦେହ ହେଲା । ସେ ହନୁମାନଙ୍କ ନିକଟକୁ ଆସି ପାଟି କରି ପଗ୍ଭରିଲେ, ''କଣ ରାତିରେ ଗ୍ଭେରି କରିବାକୁ ଆସିଛ ?'' ହନୁମାନ ତାଙ୍କ ପିଠିରେ ଗୋଟିଏ ହାଲୁକା ଭୁସି ବସାଇଦେଲେ ଏବଂ ସେହି ଏକା ମାଡ଼କେ ଦେବୀ ରକ୍ତବାନ୍ତି କରି ଭୂମିରେ ଢଳି ପଡ଼ିଲେ । ସେ ନିଜକୁ ସମ୍ଭାଳି ନେଇ କହିଲେ, ''ଯାଅ, ମୁଁ ତୁମକୁ ଚିହ୍ନିଗଲି । ବ୍ରହ୍ମା ମୋତେ ପ୍ରଥମେ କହିଥିଲେ ଯେ, ବାନରଙ୍କ ମାଡ଼ରେ ତୁମର ଏପରି ଅବସ୍ଥା ହେଲେ ଜାଣିବ, ରାବଣଙ୍କର ଅନ୍ତିମ ସମୟ ଆସି ପହଞ୍ଚିଗଲା ।'' ହନୁମାନ ଲଙ୍କା ମଧ୍ୟରେ ପ୍ରବେଶ କଲେ । ସେଠାରେ ସେ ରାକ୍ଷସମାନଙ୍କର ଆହାର-ବିହାରସ୍ଥାନ ଓ ଶୟନକକ୍ଷ ଟିକିନିଖି କରି ଦେଖିଲେ । ସେମାନଙ୍କର ଅସ୍ତ୍ରାଗାର, ମନ୍ତ୍ରଣାଗୃହ, ସୈନ୍ୟଛାଉଣୀ ଆଦି ତନ୍ନ ତନ୍ନ କରି ଦେଖିଲେ । ସୀତାଙ୍କୁ ଠାବ କରିବା ନିମିତ୍ତ ସେ ରାକ୍ଷସରାଜ ରାବଣର ଅନ୍ତଃପୁର ଟିକିନିଖି କରି ଖୋଜିଗଲେ । ମନ୍ଦୋଦରୀ ଆଦି ସ୍ତ୍ରୀମାନଙ୍କୁ ଦେଖିଲେ, କିନ୍ତୁ ସୀତାଙ୍କର ଠାବ କୌଣସିଠାରେ ପାଇଲେ ନାହିଁ । ସେ ଅତ୍ୟନ୍ତ ଚିନ୍ତିତ ହେଲେ, ତାଙ୍କ ମନରେ ବହୁତ ଗ୍ଲାନି ଆସିଲା । ସେ ଭାବିଲେ, ''ମୁଁ ଧର୍ମକୁ ଉଲ୍ଲଂଘନ କଲି ନାହିଁ ତ ? ପର ସ୍ତ୍ରୀମାନଙ୍କୁ ଗ୍ଭହିଁବା ଅଧର୍ମ ଅଟେ । ମୁଁ ଏପର୍ଯ୍ୟନ୍ତ ଏପରି ପାପ କରି ନଥିଲି; କିନ୍ତୁ ଆଜି ମୋର

ବଡ଼ ଅନ୍ୟାୟ ହୋଇଗଲା ।" ଏପରି ଭାବି ସେ ଚିନ୍ତାରେ ପଡ଼ିଗଲେ । କିନ୍ତୁ ପରକ୍ଷଣରେ ତାହାଙ୍କ ମନରେ ଅନ୍ୟ ଭାବ ଆସିଲା । ଭଗବାନଙ୍କ ସ୍ମରଣରେ ତାଙ୍କର ଚିତ୍ତ ସ୍ୱଚ୍ଛ ହୋଇଗଲା । ସେ ଏକ ସିଦ୍ଧାନ୍ତରେ ପହଞ୍ଚିଗଲେ । ସେ ଚିନ୍ତା କଲେ, "ମୁଁ ପରସ୍ତ୍ରୀକୁ ଚାହିଁଛି ସତ, କିନ୍ତୁ କୌଣସି ଦୂଷିତ ବା ଅପବିତ୍ର ଦୃଷ୍ଟିରେ ଚାହିଁ ନାହିଁ । ଆବଶ୍ୟକତା ହେତୁ ଚାହିଁଛି ଏବଂ ମୋ ମନରେ ଟିକିଏ ହେଲେ ବିକାର ଭାବ ନାହିଁ। ଇନ୍ଦ୍ରିୟର ଶୁଭ ବା ଅଶୁଭ ଅବସ୍ଥା ନିମିତ୍ତ ମନ ହିଁ କାରଣ ହୁଏ ଏବଂ ମୋର ମନ ସୁବ୍ୟବସ୍ଥିତ ଅଟେ । ମୁଁ ଶୁଦ୍ଧ ମନରେ ଖୋଜୁଅଛି, ସେଥିପାଇଁ ମୋର କୌଣସି ଦୋଷ ନାହିଁ।" ହନୁମାନ ଅନ୍ୟ ସ୍ଥାନମାନଙ୍କରେ ସୀତାଙ୍କୁ ଖୋଜିଲେ। ଆଗକୁ ଯାଇ ସେ ଗୋଟିଏ ଛୋଟ ପତ୍ରକୁଟୀର ଦେଖିଲେ। ସେହି କୁଟୀରର ସ୍ଥାନେ ସ୍ଥାନେ ରାମଙ୍କର ନାମ ଲେଖାଯାଇଥିଲା। ସେଗୁଡ଼ିକ ମଣିଖଚିତ ହୋଇଥିବାରୁ ରାତିରେ ମଧ୍ୟ ପରିଷ୍କାରଭାବେ ଦେଖାଯାଉଥିଲା । ଛୋଟ ଛୋଟ ପଟାଳିରେ ତୁଳସୀ ଗଛ, ବିଭିନ୍ନପ୍ରକାର ସୁଗନ୍ଧ ଫୁଲ ଗଛ ଲଗାଯାଇଥିଲା। ସେହି ପତ୍ରକୁଟୀର ସମ୍ମୁଖରେ ଭଗବାନଙ୍କର ଗୋଟିଏ ମନ୍ଦିର ଥିଲା। ସେଥିରେ ଭଗବାନଙ୍କର ନାନା ଆୟୁଧର ଚିତ୍ର କରାଯାଇଥିଲା । ହନୁମାନ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ, ଲଙ୍କାରେ ଏପରି ସ୍ଥାନ କେଉଁଠୁ ଆସିଲା ? ତାଙ୍କ ମନରେ ଅପାର ଆନନ୍ଦ ଜାତ ହେଲା ।

ବ୍ରାହ୍ମମୁହୂର୍ତ୍ତ ସମୟରେ ବିଭୀଷଣ ଜାଗ୍ରତ ହୋଇ ରାମନାମ ଉଚ୍ଚାରଣ କରୁଥିଲେ । ହନୁମାନଙ୍କର ବିଶ୍ୱାସ ହେଲା ଯେ, ସେ ଜଣେ ସତ୍ପୁରୁଷ । ସେ ତାହାଙ୍କ ସହିତ ପରିଚିତ ହେବା ନିମିତ୍ତ ଦୃଢ଼ ନିର୍ଣ୍ଣୟ କଲେ । ହନୁମାନ ବ୍ରାହ୍ମଣରୂପ ଧରି ରାମନାମ ଧ୍ୱନି କଲେ । ତାହା ଶୁଣି ବିଭୀଷଣ ବାହାରକୁ ଚାଲିଆସିଲେ । ଭଗବତ୍ ଭକ୍ତଦ୍ୱୟ ପରସ୍ପରକୁ ଆଲିଙ୍ଗନ କଲେ । ଦୁହିଁଙ୍କର ହୃଦୟ ପ୍ରେମ ଓ ଆନନ୍ଦରେ ପୂର୍ଣ୍ଣ ହୋଇଗଲା। ହନୁମାନ ବିଭୀଷଣଙ୍କ ହୃଦୟରେ ସାକ୍ଷାତ୍ ଭଗବାନଙ୍କୁ ଦେଖୁଥିଲେ ଓ ବିଭୀଷଣ ହନୁମାନଙ୍କୁ ଭଗବାନ ବୋଲି ମନେ କରୁଥିଲେ। ଦୁହିଁଙ୍କର ପରିଚୟ ହେଲା । ହନୁମାନଙ୍କ ପାଖରେ ଆଉ ନିଜର କଥା ବା କଣ କହିବାକୁ ଥିଲା! ସେ ପ୍ରଭୁଙ୍କର ପବିତ୍ର ଚରିତ୍ର ଏବଂ ସୀତାହରଣ ପ୍ରସଙ୍ଗ ଶୁଣାଇ ନିଜର ଆସିବାର ଅଭିପ୍ରାୟ କହିଲେ । ବିଭୀଷଣ କହିଲେ, "ପ୍ରିୟ ହନୁମାନ, ମୁଁ ଏଠାରେ ଅତ୍ୟନ୍ତ ସତର୍କ ହୋଇ ଅତି କଷ୍ଟରେ କାଳଯାପନ କରୁଛି । ପ୍ରଭୁ ମୋପରି ଅନାଥକୁ କେବେ ପରିତ୍ରାଣ କରିବେ ? ମୋର ଜାତି ତ ତମୋଗୁଣୀ । ମୋତେ କୌଣସି

ପ୍ରକାର ସାଧନା ଜଣା ନାହିଁ । ଭଗବାନଙ୍କ ଚରଣରେ ପ୍ରେମ ମଧ୍ୟ ନାହିଁ; କିପରି ମୁଁ ଆଶା କରିବି ଯେ, ମୋତେ ଭଗବାନ ମିଳିବେ ? କିନ୍ତୁ ବର୍ତ୍ତମାନ ତୁମ୍ଭଙ୍କୁ ଦେଖି ମୋ ମନରେ ବିଶ୍ୱାସ ହେଲା ଯେ, ଭଗବତ୍ କୃପା ବିନା ଏପରି ସନ୍ଥଙ୍କର କେବେ ଦର୍ଶନ ହୋଇପାରିବ ନାହିଁ । ଭଗବାନଙ୍କ କୃପାରୁ ତୁମେ ମୋର ଘରକୁ ଆସି ମୋତେ ଦର୍ଶନ ଦେଲ । ସନ୍ଥଦର୍ଶନ ବାସ୍ତବରେ ଭଗବାନଙ୍କ ସହିତ ଦର୍ଶନ ମିଳିବାର ଶୁଭ ସୂଚନା ଦେଉଅଛି ।'' ହନୁମାନ କହିଲେ, ''ବିଭୀଷଣ ! ଆମର ଭଗବାନ ଅତ୍ୟନ୍ତ ଦୟାଳୁ । ସେ ସଦାସର୍ବଦା ଦୀନଜନଙ୍କ ଉପରେ ଦୟା କରନ୍ତି । ତୁମେ ତ ତୁମ କଥା କହିଲ । ଭଲା, ମୁଁ ମଧ୍ୟ କେଉଁ କୁଳୀନ ? ବାନର ଜାତି, ଚଞ୍ଚଳ ମତି ଓ ସାଧନାହୀନ । ଅନ୍ୟର ଭଲ କରିବା କଥା କଣ କହିବା, ଯଦି ପ୍ରାତଃକାଳରେ ମୋର ନାମ କୌଣସି ଲୋକ ନିଏ, ତେବେ ଦିନସାରା ତାହାକୁ ଭୋଜନ ମିଳିବ ନାହିଁ । ସଖା ବିଭୀଷଣ ! ମୁଁ ଅଧମ ହେଲେ ମଧ୍ୟ ଭଗବାନଙ୍କର ମୋ ଉପରେ କୃପା ଅଛି । ଯେ ଏପରି ସ୍ୱାମୀଙ୍କୁ ଭଜନ କରେ ନାହିଁ, ସେ ସଂସାରରେ ପଡ଼ି ଛଟପଟ ହୁଏ । ସେ ଦୁଃଖୀ କିପରି ନ ହେବ ?'' ଭଗବାନଙ୍କର ଗୁଣାବଳୀ ସ୍ମରଣ କରି ହନୁମାନଙ୍କର ହୃଦୟ ଭକ୍ତିରେ ଗଦ୍‌ଗଦ ହୋଇଗଲା ଏବଂ ଚକ୍ଷୁରୁ ପ୍ରେମାଶ୍ରୁ ବିଗଳିତ ହେଲା । ଦୁହେଁ ବହୁ ବିଷୟରେ କଥାବାର୍ତ୍ତା ହେଲେ ଏବଂ ବିଭୀଷଣଙ୍କ ନିର୍ଦ୍ଦେଶରେ ହନୁମାନ ଅଶୋକ ବନକୁ ଗଲେ ।

ଭଗବତୀ ମାତା ସୀତା ଅଶୋକ ବୃକ୍ଷ ତଳେ ଭୂମି ଉପରେ ବସିଥିଲେ । ତାଙ୍କର ଶରୀର ଦୁର୍ବଳ ହୋଇ ଯାଇଥିଲା, ସୁନ୍ଦର କେଶଗୁଡ଼ିକ ଜଟା ପାଲଟି ଯାଇଥିଲା । ମସ୍ତକରେ ସୌଭାଗ୍ୟର ଗୋଟିଏ ମାତ୍ର ଚିହ୍ନ ବେଣୀଟିଏ ଥିଲା । ସେ ନିରନ୍ତର ଭଗବାନଙ୍କର ନାମ ଜପ କରୁଥିଲେ । ମନେ ମନେ ଭଗବାନଙ୍କର ଲୀଳା ଓ ଗୁଣ ସ୍ମରଣ କରୁଥିଲେ । ହନୁମାନ ଦୂରରୁ ଥାଇ ତାଙ୍କୁ ମାନସିକ ପ୍ରଣାମ କଲେ ଏବଂ ଶିଂଶପା ଗଛରେ ବସିଲେ । ସେହି ସମୟରେ ସେଠାକୁ ରାବଣ ଆସିଲା ଏବଂ ସୀତାଙ୍କୁ ଭୁଲାଇବା ପାଇଁ ବହୁତ ପ୍ରଯତ୍ନ କଲା; ଧମକାଇଲା । କିନ୍ତୁ ସୀତାଙ୍କର ଦୃଢ଼ତା, ପତିଭକ୍ତି, ରାମନିଷ୍ଠା ଏବଂ ସତୀତ୍ୱରେ ପ୍ରଭାବିତ ହୋଇ ସେ ଫେରିଗଲା । ରାବଣର ଅନୁରୋଧ ମାନିନେବା ପାଇଁ ବହୁତ ରାକ୍ଷସୀ ସୀତାଙ୍କୁ ପ୍ରବର୍ତ୍ତାଇଲେ । ଏପରି କଥା ଶୁଣି ସୀତାଙ୍କର ଅତ୍ୟନ୍ତ ଦୁଃଖ ହେଲା । ଭଗବାନ ରାମଙ୍କର ସମ୍ବାଦ ମିଳି ନ ଥିବାରୁ ତାଙ୍କର ଅନିଷ୍ଟର ମଧ୍ୟ ଆଶଙ୍କା ହେଲା । ଏପରି ଜଣାଗଲା ଯେ, ସେ ଆଉ ଜୀବିତ ରହିବେ ନାହିଁ । ତ୍ରିଜଟା ନିଜର ସ୍ୱପ୍ନବୃତ୍ତାନ୍ତ କହି ତାଙ୍କୁ

ଆଶ୍ୱାସନା ଦେବାକୁ ଲାଗିଲେ । ତାହା ପରେ ରାକ୍ଷସୀଙ୍କ ସହିତ ତ୍ରିଜଟା ମଧ୍ୟ ସେଠାରୁ ଗ୍ଳଲିଗଲେ ।

ସୀତାଙ୍କୁ ଅତ୍ୟନ୍ତ ବ୍ୟଥିତ ଥିବାର ଦେଖି ହନୁମାନ ବୃକ୍ଷ ଉପରେ ରହି ଭଗବାନ ରାମଙ୍କର ଜନ୍ମଠାରୁ ଆରମ୍ଭ କରି ବିବାହ, ବନଗମନ, ସୀତାହରଣ ଆଦି ବୃତ୍ତାନ୍ତ ସୁନ୍ଦର ଭାବରେ ବର୍ଣ୍ଣନା କଲେ ଏବଂ ଶେଷରେ କହିଲେ ଯେ, ସେ ରାମଙ୍କ ଦ୍ୱାରା ପ୍ରେରିତ ହୋଇଛନ୍ତି । ହନୁମାନଙ୍କର ଏହି ଅମୃତମୟୀ ବାଣୀ ଶୁଣି ସୀତାଙ୍କର ଅତ୍ୟନ୍ତ ସନ୍ତୋଷ ହେଲା । ପୁଣି ପରକ୍ଷଣରେ ଆଶଙ୍କାରେ ତାଙ୍କର ହୃଦୟ କମ୍ପି ଉଠିଲା । ସେ ବିଗ୍ଚର କଲେ, ଏହା ମଧ୍ୟ ରାକ୍ଷସୀମାୟା ହୋଇପାରେ । ହନୁମାନ ସୀତାଙ୍କ ମନକଥା ଜାଣି ପାରିଲେ । ସେ କହିଲେ, "ମାତା ! ମୁଁ କରୁଣାନିଧାନଙ୍କ ଚରଣର ଶପଥ ନେଇ କହୁଛି ଯେ, ମୁଁ ଭଗବାନ ରାମଙ୍କର ସେବକ । ସେ ଆପଣଙ୍କର ବିଶ୍ୱାସ ନିମିତ୍ତ ଗୋଟିଏ ଅନ୍ତରଙ୍ଗ କଥା କହିଛନ୍ତି । ଯେତେବେଳେ ଆପଣ ବନରେ ତାଙ୍କ ସହିତ ଥିଲେ ଏବଂ ଜୟନ୍ତ କାକବେଶରେ ଆସି ଆପଣଙ୍କର ପାଦରେ ଆଘାତ କରିଥିଲା, ସେତେବେଳେ ଭଗବାନ ତାହାପ୍ରତି ଏପରି ଗୋଟିଏ ତୃଣ ଅସ୍ତ୍ର କରି ପ୍ରୟୋଗ କରିଥିଲେ ଯେ, ତାହାକୁ ତ୍ରିଲୋକରେ କେଉଁଠି ଆଶ୍ରୟ ମିଳି ନ ଥିଲା । ଆପଣ ପ୍ରଭୁଙ୍କୁ ଯେଉଁ ମୁଦ୍ରିକା ଦେଇଥିଲେ ଏବଂ ଭଗବାନ ଯାହାକୁ ନିଜ ଆଙ୍ଗୁଳିରେ ଧାରଣ କରିଥିଲେ, ତାହା ମଧ୍ୟ ଆପଣଙ୍କ ବିଶ୍ୱାସ ନିମିତ୍ତ ପ୍ରଭୁ ମୋତେ ଦେଇଛନ୍ତି । ମୁଁ ଆପଣଙ୍କର ଚରଣ ସ୍ପର୍ଶ କରୁଅଛି, ଆପଣ ମୋତେ ବିଶ୍ୱାସ କରନ୍ତୁ ।"

ହନୁମାନଙ୍କର ହୃଦୟ ବାସ୍ତବରେ ନିର୍ମଳ ଓ ପବିତ୍ର ଥିଲା । ବାସ୍ତବ ପ୍ରମାଣ ଦେବା ପରେ ସେ ପ୍ରକୃତରେ ରାମଙ୍କର ଦୂତ ବୋଲି ସୀତାଙ୍କର ବିଶ୍ୱାସ ହୋଇଗଲା । ସେ ହନୁମାନଙ୍କୁ ତଳକୁ ଡାକିଲେ ଏବଂ ମୁଦ୍ରିକା ନେଇ ଅତ୍ୟନ୍ତ ଆନନ୍ଦିତ ହେଲେ । ତାହାଙ୍କୁ ଭଗବାନଙ୍କର ସନ୍ଦେଶ ମିଳିବାରୁ ସେ ଏତେ ଆନନ୍ଦିତ ହେଲେ ଯେ, ଲାଗିଲା, ସାକ୍ଷାତ୍ ଭଗବାନ ତାହାଙ୍କୁ ମିଳିଗଲେ । ସେ କହିଲେ, "ହନୁମାନ ! ଆଜି ତୁମେ ମୋର ବଡ଼ ଉପକାର କଲ । ଯଦି ଭଗବାନ ମୋତେ ଭୁଲିଗଲେ ଅଥବା ତାହାଙ୍କର କୌଣସି ଅନିଷ୍ଟ ହେଲା ଭାବି ମୁଁ ପ୍ରାଣତ୍ୟାଗ କରିଥାନ୍ତି, ତେବେ ଏ କଥା ଶୁଣି ସେ କେତେ କଷ୍ଟ ପାଇ ନ ଥାନ୍ତେ ! ମୋରି ପାଇଁ ସେ ଦୁଃଖୀ । ହନୁମାନ, ସେ ତେବେ କଣ ମୋତେ ମନେ ପକାନ୍ତି ? ମୁଁ କେବେ ତାଙ୍କର ଦେଖା ପାଇବି ? ସେ କ'ଣ ଶୀଘ୍ର ମୋତେ ଉଦ୍ଧାର କରିବେ ?" ଏକଥା କହୁଁ କହୁଁ ସୀତାଙ୍କର

କଣ୍ଠ ରୁଦ୍ଧ ହୋଇଗଲା । ଆଖିରେ ଲୁହ ଭରିଗଲା । ସେ ଆଉ କିଛି କହି ପାରିଲେ ନାହିଁ । ହନୁମାନ କହିଲେ, ''ମାତା ! ଆପଣ କାହିଁକି ଏତେ ଦୁଃଖ କରୁଛନ୍ତି ? ଭଗବାନ ରାମ ଆପଣଙ୍କ ପାଇଁ କେତେ ଯେ ଦୁଃଖୀ, ତାହା ଆପଣଙ୍କ ନିକଟରେ ବର୍ଣ୍ଣନା କରି ପାରିବି ନାହିଁ । ସେ ପୃଥିବୀଆଡ଼କୁ ଚାହିଁ କହୁଛନ୍ତି, 'ମା ପୃଥିବୀ ! ମୋରି ଯୋଗୁ ତୁମର ଆଦରର କନ୍ୟା ଅତି ଦୁଃଖ ଭୋଗ କରୁଛି । କଣ ଏଥିପାଇଁ ତୁମେ ମୋ ଉପରେ ରାଗିଛ ? ମୋତେ ତୁମ ମଧ୍ୟରେ ପ୍ରବେଶ କରିବାକୁ ସ୍ଥାନ ଦେଉ ନାହିଁ ?' ସୁନ୍ଦର ଫୁଲ ଓ କଢ଼ ଦେଖି ସେ କହୁଛନ୍ତି, 'ଲକ୍ଷ୍ମଣ, ଏଗୁଡ଼ିକ ତୋଳି ଆଣ । ମୁଁ ସୀତାଙ୍କ କେଶରେ ବାନ୍ଧିଦେବି ।' ମାତା ! ତାଙ୍କର ବିରହ ବ୍ୟଥା ଅବର୍ଣ୍ଣନୀୟ । ସେ ନିଜକୁ ଭୁଲି ଯାଉଛନ୍ତି ଏବଂ ସଦାସର୍ବଦା ଆପଣଙ୍କୁ ସ୍ମରଣ କରୁଛନ୍ତି ।''

ହନୁମାନ ପୁଣି କହିଲେ, ''ମାତା ! ସେ ଆପଣଙ୍କୁ ସମ୍ବୋଧନ କରି କହନ୍ତି—'ପ୍ରିୟେ, ତୁମର ଉପସ୍ଥିତିରେ ଯେଉଁ ବସ୍ତୁ ମୋର ଅତି ପ୍ରିୟ ଥିଲା, ସୁଖକର ଥିଲା, ତାହା ଏବେ ଦୁଃଖକର ହୋଇଗଲା । ସୁନ୍ଦର ସୁନ୍ଦର ନବପଲ୍ଲବ ମୋତେ ଅଗ୍ନିପରି ଲାଗୁଛି । ଚନ୍ଦ୍ରଙ୍କର କିରଣ ଗ୍ରୀଷ୍ମଋତୁର ପ୍ରଖର ସୂର୍ଯ୍ୟକିରଣପରି ଲାଗୁଛି; ମେଘର ଛୋଟ ଛୋଟ ବିନ୍ଦୁ, ଯାହା ଅମୃତପରି ଲାଗୁଥିଲା, ତାହା ଉତପ୍ତ ତୈଳବିନ୍ଦୁପରି ଲାଗୁଛି । ଶୀତଳ, ମନ୍ଦ, ସୁଗନ୍ଧ ବାୟୁ ମୋତେ ବିଷଧର ସର୍ପର ଶ୍ୱାସପରି ପୀଡ଼ା ଦେଉଛି । ଯଦି ମୋର ଏହି ଉଦ୍‌ବେଗ ଓ ଆବେଗ କାହାରି ଆଗରେ ପ୍ରକାଶ କରିଦେଇ ପାରନ୍ତି, ତେବେ ମୋର ହୃଦୟ ଟିକେ ହାଲୁକା ହୋଇଯାଆନ୍ତା, କିନ୍ତୁ କାହାକୁ କହିବି ? କଣ ବା କହିବି ? କିଏ ବୁଝିବ ଆଉ ଏକଥା ? ଆମ ଦୁହିଁଙ୍କର ଯେଉଁ ପାରସ୍ପରିକ ପ୍ରେମ, ତାହା ଆମ ଦୁହିଁଙ୍କ ଆତ୍ମା ହିଁ ଜାଣେ ଏବଂ ମୋର ହୃଦୟ, ମୋର ଆତ୍ମା ସର୍ବଦା ତୁମ ପାଖରେ ରହିଛି । କ୍ଷଣକ ପାଇଁ ବି ମୁଁ ତୁମକୁ ଛାଡ଼ିପାରୁ ନାହିଁ; ତୁମଠାରୁ ଅଲଗା ହୋଇପାରୁ ନାହିଁ । କ'ଣ ଏତିକିରେ ମୋର ଅନିର୍ବଚନୀୟ ପ୍ରେମର ବ୍ୟାଖ୍ୟା ହୋଇଯିବ ! କଦାପି ନୁହେଁ । କହିଲେ ବି କେତେ କହିବି ?''

ଏହା କହୁଁ କହୁଁ ହନୁମାନ ଭାବାବିଷ୍ଟ ହୋଇଗଲେ । ସୀତାଙ୍କୁ ଜଣାଗଲା ଯେ, ସ୍ୱୟଂ ରାମ ତାହାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ କହୁଛନ୍ତି । ସେ ପ୍ରେମମଗ୍ନ ହୋଇଗଲେ; ନିଜକୁ ପୂରାପୂରି ଭୁଲିଗଲେ । ହନୁମାନ ତାହାଙ୍କୁ ଧୈର୍ଯ୍ୟ ପ୍ରଦାନ କରି କହିଲେ, ''ମାତା ! ଭଗବାନଙ୍କର ପ୍ରଭାବ, ଐଶ୍ୱର୍ଯ୍ୟ ଏବଂ ବଳକୁ ଦେଖନ୍ତୁ । ତାଙ୍କର ବାଣ ଆଗରେ ଏହି ତୁଚ୍ଛ

ରାକ୍ଷସଗଣ କ୍ଷଣେ ବି ତିଷ୍ଠି ପାରିବେ ନାହିଁ । ଜାଣନ୍ତୁ, ଏମାନେ ନିଶ୍ଚିତ ଭାବେ ମରିବେ । ଭଗବାନଙ୍କୁ ଏପର୍ଯ୍ୟନ୍ତ ଆପଣଙ୍କର ଠାବ ମିଳି ନାହିଁ । ନ ହେଲେ ସେ କେଉଁକାଳରୁ ରାକ୍ଷସମାନଙ୍କୁ ସଂହାର କରି ଆପଣଙ୍କୁ ନେଇ ସାରନ୍ତେଣି । ଆମେସବୁ ବାନର-ଭଲ୍ଲୁକ ପ୍ରଭୁଙ୍କ ସାଙ୍ଗରେ ଆସିବୁ । ଏହି ନିଶାଚରଙ୍କୁ ପିଟି ପିଟି ମାରିଦେଇ ଆପଣଙ୍କୁ ନେଇ ଆନନ୍ଦମନରେ ଅଯୋଧ୍ୟା ଫେରିଯିବୁ ।

"ମାତା ! ଆପଣ କଣ ପ୍ରଭୁଙ୍କର ପ୍ରଭାବ ଭୁଲିଯାଇଛନ୍ତି ? ସେ ଜାଣିବା ମାତ୍ରେ ସେନା ଧରି ଅଗ୍ରସର ହେବେ । ବାଣ ଦ୍ୱାରା ସମୁଦ୍ରକୁ ସ୍ତମ୍ଭିତ କରିଦେବେ । ଲଙ୍କାରେ ଜଣେ ହେଲେ ରାକ୍ଷସ ବଞ୍ଚି ରହିପାରିବେ ନାହିଁ । ଯଦି ଦେବତା, ଦାନବ ଏବଂ ସ୍ୱୟଂ ମୃତ୍ୟୁ ମଧ୍ୟ ଭଗବାନ ରାମଙ୍କ ମାର୍ଗରେ ବିଘ୍ନ ଉପୁଜାଇବେ, ତେବେ ସେମାନେ ବି ନିଶ୍ଚୟ ନଷ୍ଟ ହୋଇଯିବେ । ମାତା ! ମୁଁ ଶପଥ କରି କହୁଛି, ଆପଣଙ୍କର ବିଚ୍ଛେଦରେ ଭଗବାନ ରାମ କେତେ ଯେ ବ୍ୟଥିତ, ତାହାର ବର୍ଣ୍ଣନା କରାଯାଇପାରିବ ନାହିଁ । ସେ କ୍ଷଣେମାତ୍ର ମଧ୍ୟ ବିଳମ୍ବ କରିବେ ନାହିଁ । ଆପଣ ଶୀଘ୍ର ତାହାଙ୍କୁ ସକୁଶଳ ଦେଖିବେ ।"

ସୀତା କହିଲେ, 'ହନୁମାନ ! ଏ ଭିତରେ ଦଶମାସ କଟିଗଲାଣି । ଆଉ ଦୁଇମାସ ଅଛି । ଯଦି ଏହା ମଧ୍ୟରେ ଭଗବାନ ମୋର ଉଦ୍ଧାର ନ କରିବେ, ମୁଁ ତାହାଙ୍କର ଦର୍ଶନରୁ ବଞ୍ଚିତ ହୋଇ ରହିଯିବି । ମୁଁ ତାହାଙ୍କର ଦର୍ଶନ ଆଶାରେ ବଞ୍ଚି ରହିଛି । ଯଦି ବିଭୀଷଣ ରାବଣଙ୍କୁ ଅନୁନୟ ବିନୟ କରି ମୋତେ ରକ୍ଷା କରି ନ ଆନ୍ତେ, ତେବେ କେଉଁ କାଳରୁ ରାବଣ ମୋତେ ମାରି ସାରନ୍ତାଣି ।" ସୀତା ହନୁମାନଙ୍କୁ ଏହି କଥା କହୁ କହୁ ବ୍ୟାକୁଳ ହୋଇଗଲେ । ତାହାଙ୍କର କଣ୍ଠ ରୁଦ୍ଧ ହୋଇଗଲା । ସେ ଆଉ କିଛି କହି ପାରିଲେ ନାହିଁ ।

ହନୁମାନ କହିଲେ, "ମାତା ! ମୁଁ ନିଶ୍ଚିତଭାବରେ କହୁଛି, ଭଗବାନ ଆପଣଙ୍କର ସମ୍ବାଦ ପାଇବାମାତ୍ରେ ଚ୍ଚଳି ଆସିବେ । କିନ୍ତୁ ତାଙ୍କର ଆସିବାର ଆବଶ୍ୟକତା କଣ ? ମୁଁ ଆଜି ଆପଣଙ୍କୁ ଦୁଃଖରୁ ମୁକ୍ତ କରିଦେବି । ଆପଣ ମୋ ପିଠି ଉପରେ ବସନ୍ତୁ । ମୁଁ ଆପଣଙ୍କୁ ପିଠିରେ ବସାଇ ସମୁଦ୍ର ପାର କରିଯିବି ଏବଂ ଆପଣଙ୍କୁ ନେଇ ଶ୍ରୀରାମଙ୍କ ନିକଟରେ ପହଞ୍ଚାଇ ଦେବି । ଭଗବାନଙ୍କ କୃପାରେ କେବଳ ଆପଣଙ୍କୁ ନୁହେଁ, ରାବଣ ସହିତ ସମଗ୍ର ଲଙ୍କାକୁ ମଧ୍ୟ ମୁଁ ନେଇଯାଇ ପାରିବି । ଆପଣଙ୍କୁ ନେଲା ବେଳେ କୌଣସି ରାକ୍ଷସ ମୋର ପିଛା ଧରି ପାରିବେ ନାହିଁ ।" ହନୁମାନଙ୍କର କଥା ଶୁଣି ସୀତା ପ୍ରସନ୍ନ ହେଲେ । ସେ କହିଲେ, "ହନୁମାନ, ତୁମର ଶରୀର ଅତ୍ୟନ୍ତ ଛୋଟ,

ତୁମେ ମୋତେ ନେଇ ଯିବାର ସାହସ କିପରି କରୁଛ ?'' ହନୁମାନ ସୀତାଙ୍କୁ ନିଜର ବିରାଟ ରୌଦ୍ରରୂପ ଦେଖାଇଲେ । ସେ ବଢ଼ି ବଢ଼ି ସୁମେରୁ ପର୍ବତ ସମାନ ହୋଇଗଲେ । ସେ ସୀତାଙ୍କୁ କହିଲେ, ''ଦେବି ! ଆଉ ବିଳମ୍ବ କର ନାହିଁ। କହିବ ତ, ରାକ୍ଷସମାନଙ୍କ ସହିତ ସମଗ୍ର ଲଙ୍କାକୁ ନେଇଯିବି । ଯଦି କହିବ, ସମସ୍ତ ରାକ୍ଷସଙ୍କୁ ମାରି, ଲଙ୍କାକୁ ଭଗବାନ ରାମଙ୍କ ନିକଟକୁ ନେଇଯିବି ।''

ଜାନକୀ କହିଲେ, ''ହନୁମାନ ! ମୁଁ ତୁମର ଶକ୍ତି ଓ ବଳ ଜାଣିଲି । ତୁମେ ବାୟୁ ଓ ଅଗ୍ନିଙ୍କ ପରି ପ୍ରତାପଶାଳୀ । ତୁମେ ମୋତେ ନେଇ ଯାଇ ପାରିବ, କିନ୍ତୁ ତୁମ ସହିତ ମୋର ଯିବା ଉଚିତ ନୁହେଁ । ମୁଁ ତୁମର ତୀବ୍ର ଗତିରେ ମୂର୍ଚ୍ଛିତା ହୋଇଯିବି; ତୁମ ଉପରୁ ଖସି ପଡ଼ିବି । ରାକ୍ଷସମାନଙ୍କ ସହ ତୁମକୁ ଲଢ଼ାଇ କରିବାକୁ ପଡ଼ିପାରେ, ଏବଂ ମୁଁ ତୁମ ପିଠି ଉପରେ ରହିଲେ ତୁମକୁ ଅନେକ ବିପଦର ସମ୍ମୁଖୀନ ହେବାକୁ ପଡ଼ିବ । ଯୁଦ୍ଧ କଥା; ତୁମେ ଜୟ କରିବ, କି ସେମାନେ ଜୟ କରିବେ, କିଏ କହିବ ? ତୁମେ ଜୟ କରିପାର, କିନ୍ତୁ ସେଥିରେ ଭଗବାନଙ୍କର ଯଶ ବୃଦ୍ଧି ହେବ ନାହିଁ । ମୁଁ ଏଭଳି ଭାବରେ ଗଲେ ଲୋକମାନଙ୍କର ବିଭିନ୍ନ ପ୍ରକାର ସନ୍ଦେହ ହୋଇପାରେ । ଲୋକଙ୍କ ମନରେ ମୋ ଚରିତ୍ର ଉପରେ ଆଶଙ୍କା ଆସିପାରେ ।'' ସୀତା ଆହୁରି ମଧ୍ୟ ଅନେକ କାରଣ ଦର୍ଶାଇ କହିଲେ, ''ପତିଭକ୍ତି ଦୃଷ୍ଟିରୁ ମୁଁ ସ୍ୱେଚ୍ଛାରେ ତୁମର ଶରୀରକୁ ସ୍ପର୍ଶ କରିପାରିବି ନାହିଁ । ଅବଶ୍ୟ ରାବଣ ମୋର ଶରୀର ସ୍ପର୍ଶ କରିଥିଲା । ଏହା ତ ବିବଶତାର କଥା । ମୁଁ ଅସମର୍ଥ ଥିଲି । କଣ ଆଉ କରି ପାରିଥାନ୍ତି ?* ଯଦି ରାମ ଏଠାକୁ ଆସି ରାକ୍ଷସମାନଙ୍କ ସହିତ ରାବଣକୁ ମାରିବେ, ତେବେ ମୁଁ ତାଙ୍କର ଯୋଗ୍ୟ ହେବି ଏବଂ ତାହାଙ୍କ ସହିତ ଯିବି ।'' ହନୁମାନ ସୀତାଙ୍କର ଯୁକ୍ତିଯୁକ୍ତ କଥାକୁ ସମ୍ମାନ ଦେଲେ ଏବଂ ପ୍ରଶଂସା କଲେ । ସୀତା କହିଲେ, ''ପୁତ୍ର ! ତୁମର ଭକ୍ତି, ଭଗବାନଙ୍କଠାରେ ବିଶ୍ୱାସ ଏବଂ ତୁମର ବଳ ଓ ପୌରୁଷ ଦେଖି ମୋତେ ଅତ୍ୟନ୍ତ ସନ୍ତୋଷ ଲାଗୁଛି । ମୁଁ ତୁମକୁ ଆଶୀର୍ବାଦ କରୁଛି ଯେ, ତୁମେ ବଡ଼ ବଳବାନ, ଶୀଳବାନ୍ ଓ ଅଜର ଅମର ହୁଅ । ଭଗବାନ ସର୍ବଦା ତୁମ ପ୍ରତି ସ୍ନେହ ରଖନ୍ତୁ ।''

* ଭର୍ତ୍ତୁର୍ଭକ୍ତିଂ ପୁରସ୍କୃତ୍ୟ ରାମାଦନ୍ୟସ୍ୟ ବାନର । ନାହଂ ସ୍ପ୍ରଷ୍ଟୁଂ ସ୍ୱତୋ ଗାତ୍ରମିଚ୍ଛେୟଂ ବାନରୋତ୍ତମ ॥
ଯଦହଂ ଗାତ୍ରସଂସ୍ପର୍ଶଂ ରାବଣସ୍ୟ ଗତାବଳାତ୍ । ଅନୀଶା କିଂ କରିଷ୍ୟାମି ବିନାଥା ବିବଶା ସତୀ ॥
(ବା.ରା.୫/୩୭/୬୨-୬୩)

"ଭଗବାନ ସର୍ବଦା ତୁମ ପ୍ରତି ସ୍ନେହ ରଖନ୍ତୁ"—ଏ କଥା ଶୁଣି ହନୁମାନ ପୁଲକିତ ହୋଇଗଲେ । ଆଉ କଣ ସେ ଚାହାନ୍ତି ? ଏହା ହିଁ ତ ଜୀବନର ପରମ ଲକ୍ଷ୍ୟ ଅଟେ । ସେ ମାତାଙ୍କର ଆଶୀର୍ବାଦକୁ ଅମୋଘ କହି ନିଜର କୃତକୃତ୍ୟତା ପ୍ରକାଶ କଲେ ।

ମାତାଙ୍କ ଦର୍ଶନ ପରେ ହନୁମାନ ଚିନ୍ତା କଲେ, "ଶ୍ରୀରାମଙ୍କ ସହ ରାବଣର ଯୁଦ୍ଧ ହେବା ନିଶ୍ଚିତ । କିନ୍ତୁ ତାହାର ଦୁର୍ଗ ଏତେ ସୁଦୃଢ଼ ଓ ଏପରି ସୁରକ୍ଷିତ ଯେ, ତାହାକୁ ଜୟ କରିବା ସମ୍ଭବ ନୁହେଁ । କିନ୍ତୁ ତାହାକୁ କିପରି ଭଙ୍ଗାଯିବ, ତାହା ଏକ ପ୍ରଶ୍ନ । ଆଚ୍ଛା; ମୁଁ ତ ବଣର ଫଳ ତୋଳି ଖାଇପାରିବି, କାରଣ ଭଗବାନଙ୍କର କାମ ଏବେ ହୋଇଗଲା । ମୁଁ ବୃକ୍ଷର କିଛି ଡାଳପତ୍ର ଭାଙ୍ଗି ଏହି ଦୁଷ୍ଟମାନଙ୍କୁ ଉତ୍ତେଜିତ କରିବି ।" ହନୁମାନ ଏପରି ନିର୍ଣ୍ଣୟ କରିନେଲେ । ତାଙ୍କର ବୁଦ୍ଧି ଓ ବଳ ଦେଖି ସୀତା ମଧ୍ୟ ଏଥିପାଇଁ ଅନୁମତି ଦେଇଦେଲେ ।

ଅଶୋକବନର ଅନେକ ବୃକ୍ଷ ନଷ୍ଟ ହୋଇଗଲା । ହଜାର ହଜାର ରାକ୍ଷସ ପ୍ରତିରୋଧ କରିବାକୁ ଆସି ମୃତ୍ୟୁମୁଖରେ ପଡ଼ିଲେ । ଏକା ଭୁସିରେ ଅକ୍ଷୟ କୁମାରର ହାଡ଼ ଭାଙ୍ଗି ଚୁରମାର୍ ହୋଇଗଲା । ସାରା ଲଙ୍କାରେ ଚହଳ ପଡ଼ିଗଲା । ରାବଣ ପ୍ରଥମେ ଯୁଦ୍ଧ କରିବାକୁ ଆସୁଥିଲା, କିନ୍ତୁ ମେଘନାଦ ତାକୁ ବାରଣ କଲା । ସେ ନିଜେ ଯୁଦ୍ଧକୁ ଆସିଲା ଏବଂ ହନୁମାନଙ୍କର ପ୍ରହାରରେ ଅସ୍ତବ୍ୟସ୍ତ ହୋଇଗଲା । ସେ ଭୟ କରି ବ୍ରହ୍ମପାଶ ପ୍ରୟୋଗ କଲା । ବ୍ରହ୍ମାଙ୍କ ବରରେ ହନୁମାନ ତ ବ୍ରହ୍ମପାଶରୁ ମୁକ୍ତ ଥିଲେ, ତଥାପି ସେ ଚିନ୍ତା କଲେ, ବ୍ରହ୍ମପାଶକୁ ଅବମାନନା କରିବା ଉଚିତ ନୁହେଁ । ବରଂ ରାବଣର ସଭାକୁ ଯାଇ ସେଠାରେ ଭଗବାନଙ୍କର ମହିମା ଓ ଗୁଣାବଳୀ ଶୁଣାଇବା ଉଚିତ; ତାହା ଦ୍ୱାରା ରାକ୍ଷସମାନେ ଭୟଭୀତ ହୋଇଯିବେ । ଏପରି ଭାବି ସେ ବ୍ରହ୍ମପାଶରେ ବାନ୍ଧି ହୋଇଗଲେ ।

ମେଘନାଦ ଅତ୍ୟନ୍ତ ଆନନ୍ଦରେ ତାହାଙ୍କୁ ରାଜସଭାକୁ ନେଇ ଆସିଲା । ସେଠାକୁ ଯାଉଁ ଯାଉଁ ସେହି ବନ୍ଧନ ଖୋଲିଯାଇ ହନୁମାନଙ୍କ ଶରୀରରୁ ଖସି ପଡ଼ିଲା । ହନୁମାନ ଦେଖିଲେ, ରାବଣର ଦରବାରରେ ବଡ଼ ବଡ଼ ଦେବତା, ଲୋକପାଳ, ଦିଗପାଳ, ହାତ ଯୋଡ଼ି ଦଣ୍ଡାୟମାନ ରହିଛନ୍ତି । ସେଠାରେ ସୂର୍ଯ୍ୟଙ୍କର ତେଜ ମଧ୍ୟ ତୀବ୍ର ନୁହେଁ । ବାୟୁଦେବ ପଙ୍ଖା ଚାଳନ କରୁଛନ୍ତି । ଅଗ୍ନିଦେବ ତାର ଆଜ୍ଞାକୁ ଅପେକ୍ଷା କରି ରହିଛନ୍ତି । ହନୁମାନ ସେଠାରେ ନିର୍ଭୟରେ ଠିଆହୋଇ ରହିଲେ । ରାବଣ ତାଙ୍କୁ ଏହି ପ୍ରକାର ଅବସ୍ଥାରେ

ଦେଖି, ଜଣା ନାହିଁ, କଣ ଭାବି ଜୋରରେ ହସିଲା; କିନ୍ତୁ ପରକ୍ଷଣରେ ନିଜ ପୁତ୍ର ଅକ୍ଷୟ କୁମାରର ମରଣ କଥା ସ୍ମରଣ ଆସିଗଲା । ତେଣୁ ସେ ଜୋର୍‌ରେ ଗର୍ଜନ କରି କହିଲା, "ତୁ କିଏ ? କାହାର ବଳରେ ଏପରି ଉତ୍ପାତ କରୁଛୁ ? ତୁ କ'ଣ ମୋତେ ଜାଣି ନାହୁଁ ? ବର୍ତ୍ତମାନ ତୋତେ ବୁଝାଇ ଦେଉଛି ।" ହନୁମାନ ବଡ଼ ଗମ୍ଭୀର ସ୍ୱରରେ କହିଲେ, "ରାବଣ ! ଯେ ସମଗ୍ର ପ୍ରକୃତିର ଆଶ୍ରୟ, ଯାହାଙ୍କର ଲୋମରୁ ପ୍ରତିକ୍ଷଣ କୋଟି କୋଟି ବ୍ରହ୍ମାଣ୍ଡ ସୃଷ୍ଟି ହେଉଅଛି, ଯାହାଙ୍କ ଶକ୍ତିରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ନିଜ ନିଜର କାର୍ଯ୍ୟ କରନ୍ତି, ଯାହାଙ୍କ କୃପାବଳରେ ଶେଷନାଗ ପୃଥିବୀକୁ ଧାରଣ କରିବା ନିମିତ୍ତ ସମର୍ଥ ହୋଇ ପାରନ୍ତି, ଯେ ତୁମରିପରି ରାକ୍ଷସମାନଙ୍କୁ ଦଣ୍ଡ ଦେବାପାଇଁ ଅବତୀର୍ଣ୍ଣ ହୋଇଛନ୍ତି, ମୁଁ ହେଉଛି ସେହି ଭଗବାନ ରାମଙ୍କର ଦୂତ । ତୁମେ କଣ ତାଙ୍କୁ ଜାଣ ନାହିଁ ? ଜନକଙ୍କର ଧନୁର୍ଯଜ୍ଞରେ ଯେଉଁ ଧନୁକୁ ତୁମେ ହଲାଇ ପାରି ନ ଥିଲ, ସେହି ଧନୁକୁ ଅବଲୀଳା କ୍ରମେ ଭାଙ୍ଗି ଦେଇଥିବା ପ୍ରଭୁଙ୍କୁ ତୁମେ କଣ ଭୁଲିଗଲଣି ? ଖର, ଦୂଷଣ ଏବଂ ତ୍ରିଶିରା ସମେତ ଚଉଦ ହଜାର ରାକ୍ଷସଙ୍କୁ ଏକୁଟିଆ ମାରିବାକୁ ସମର୍ଥ ପ୍ରଭୁ ରାମଚନ୍ଦ୍ରଙ୍କୁ ତୁମେ କଣ ଜାଣ ନାହିଁ ? ତୁମକୁ ନିଜ କାଖରେ ଜାକି ରଖିଥିବା ବାଳିକୁ ଯେ ଏକାବାଣରେ ନିହତ କରିଛନ୍ତି, ତାହାଙ୍କୁ ତୁମେ କଣ ଜାଣ ନାହିଁ ? ରାବଣ ! ତୁମେ ତାହାଙ୍କୁ ଭୁଲି ଯାଇପାର, କିନ୍ତୁ ସେ ତୁମକୁ ଭୁଲି ପାରିବେ ନାହିଁ । ଯାହାଙ୍କ ଅନୁପସ୍ଥିତିରେ ବେଶ ବଦଳାଇ, ଠକାଇ, ଯାହାଙ୍କର ଧର୍ମପତ୍ନୀଙ୍କୁ ତୁମେ ଚୋରାଇ ଆଣିଛ, ତାଙ୍କୁ ଭୁଲି ମଧ୍ୟ ତୁମେ ବଞ୍ଚି ପାରିବ ନାହିଁ । ମୁଁ ସେହି ରାମଚନ୍ଦ୍ରଙ୍କର ଦୂତ । ମୋତେ ଠିକ୍ ଭାବରେ ଚିହ୍ନିଯାଅ । ଆଉ ଡେରି ନାହିଁ । ତାହାଙ୍କର ବାଣରେ ଲଙ୍କା ଶୂନ୍ୟପ୍ରାୟ ହୋଇଯିବ । ତୁମେ ଓ ତୁମର ସଭାସଦ୍‌ଙ୍କର ନାମଗନ୍ଧ ମଧ୍ୟ ରହିବ ନାହିଁ ।"

ହନୁମାନଙ୍କର ନିର୍ଭୀକ ବାଣୀ ଶୁଣି ରାକ୍ଷସମାନେ ଭୟ ଓ କ୍ରୋଧରେ କମ୍ପିବାକୁ ଲାଗିଲେ । ସେମାନଙ୍କ ମନରେ ଏହି ଭୟ ଆସିଲା ଯେ, ଯୁଦ୍ଧରେ ସେମାନେ ରାମଙ୍କର ସମ୍ମୁଖୀନ ହୋଇ ପାରିବେ ନାହିଁ । ରାବଣ ହନୁମାନଙ୍କର କଥାକୁ ଉପେକ୍ଷା କଲା । ହନୁମାନ ପୁଣି କହିଲେ, "ଭୋକ ହେବାରୁ ଫଳମୂଳ ଖାଇ ମୁଁ କିଛି ଅପରାଧ କରି ନାହିଁ । ଗଛପତ୍ର ଭାଙ୍ଗିବା ମୋର ସ୍ୱଭାବ । ଯେଉଁ ଦୁଷ୍ଟମାନେ ମୋତେ ମାରିଲେ, ସେମାନଙ୍କଠାରୁ ଆତ୍ମରକ୍ଷା କରିବା ନିମିତ୍ତ ମୁଁ ମଧ୍ୟ ପ୍ରହାର କଲି । ଦୋଷ ତ ତୁମ ପୁତ୍ରର । ସେ ମୋତେ ବନ୍ଦୀ କରିବା ପାଇଁ ଚେଷ୍ଟା କରୁଥିଲା । କିନ୍ତୁ ମୁଁ ତାକୁ କ୍ଷମା କରିଦେଲି ।

ତୁମେ ମୋର ଗୋଟିଏ କଥା ଶୁଣ ଏବଂ ମୋର କଥା ଗୋଟି ଗୋଟି କରି ମାନିନିଅ। ମୁଁ ବିନୟର ସହିତ କହୁଛି, ପ୍ରେମରେ କହୁଛି ଏବଂ ନିର୍ମଳ ହୃଦୟରେ ତୁମର ମଙ୍ଗଳ ନିମିତ୍ତ କହୁଛି, ଭାଇ ରାବଣ ! ଯେଉଁ କାଳ ସାରା ସଂସାରକୁ ସଂହାର କରେ, ସେ ତ ରାମଙ୍କୁ ଭୟ କରି ତାହାଙ୍କର ଅଧୀନରେ ରହେ। ତାହାଙ୍କ ସହିତ ଶତ୍ରୁତା କରି ତୁମେ ରକ୍ଷା ପାଇ ପାରିବ ନାହିଁ। ତୁମେ ଜାନକୀଙ୍କୁ ନେଇ ଚାଲ, ପରମକୃପାଳୁ ଭଗବାନ ତୁମକୁ କ୍ଷମା କରିଦେବେ। ସେ ଶରଣାଗତର ସମସ୍ତ ଅପରାଧ ଭୁଲି ଯାଆନ୍ତି। ତୁମେ ତାଙ୍କର ଚରଣକୁ ଧ୍ୟାନ କର ଏବଂ ଲଙ୍କାର ନିଷ୍କଣ୍ଟକ ରାଜ୍ୟ ଭୋଗ କର। ତୁମେ ଅତ୍ୟନ୍ତ କୁଳୀନ ଓ ବିଦ୍ୱାନ; ତୁମର ଅତୁଳ ସମ୍ପତ୍ତି ଅଛି। ଏସବୁ ପାଇଁ ଅଭିମାନ କର ନାହିଁ। ଏହା ଅତି କ୍ଷଣସ୍ଥାୟୀ। ଚାଲ, ଭଗବାନଙ୍କର ଶରଣ ନିଅ। ମୁଁ ତୁମକୁ ସତକଥା କହୁଛି। ଶପଥ କରି କହୁଛି ଯେ, ରାମଙ୍କର ଶତ୍ରୁ ହେଲେ, ତୁମକୁ କେହି ରକ୍ଷା କରି ପାରିବେ ନାହିଁ।

ସେଥିପାଇଁ—

**ମୋହମୂଳ ବହୁ ସୂଳ ପ୍ରଦ ତ୍ୟାଗହୁ ତମ ଅଭିମାନ।**
**ଭଜହୁ ରାମ ରଘୁନାୟକ କୃପା ସିନ୍ଧୁ ଭଗୱାନ ॥**

ଯଦିଓ ହନୁମାନ ବହୁତ ହିତବାଣୀ କହିଲେ, ରାବଣକୁ ତାହା ଆଦୌ ଭଲ ଲାଗିଲା ନାହିଁ। କ୍ରୋଧରେ ସେ ରାକ୍ଷସମାନଙ୍କୁ ଆଜ୍ଞା ଦେଲା, ହନୁମାନକୁ ମାରିଦିଅ। ବିଭୀଷଣ ଆପତ୍ତି କଲେ ଯେ, ଦୂତଙ୍କୁ ମାରିବା ଅନ୍ୟାୟ। ଶେଷରେ ଅଙ୍ଗଭଙ୍ଗ କରିବାର ନିର୍ଣ୍ଣୟ କରାଗଲା ଏବଂ ରାବଣ ତାହାଙ୍କର ପୁଚ୍ଛରେ ନିଆଁ ଲଗାଇଦେବାକୁ ଆଜ୍ଞା ଦେଲା। ହନୁମାନଙ୍କ ଲାଞ୍ଜରେ କନା ଗୁଡ଼ାଇ ଦିଆଗଲା। ତେଲରେ ତାହାକୁ ଭିଜାଇ ଦିଆଗଲା ଏବଂ ସେଥିରେ ନିଆଁ ଲଗାଇ ଦିଆଗଲା। କେତେଜଣ ରାକ୍ଷସ ତାହାଙ୍କୁ ଧରି ନଗରରେ ବୁଲାଇଲେ। ପିଲାମାନେ ତାଳି ମାରି ମାରି ନାଚିବାକୁ ଲାଗିଲେ। କିନ୍ତୁ ହନୁମାନ ଦେଖିଲେ, ଲଙ୍କା ଧ୍ୱଂସ କରିବାର ଏହା ହିଁ ଶୁଭ ଏବଂ ଉପଯୁକ୍ତ ଅବସର। ସେ ଲାଞ୍ଜରେ ଏପରି ଏକ ପ୍ରହାର ଦେଲେ ଯେ, ରାକ୍ଷସମାନେ ନିଜ ନିଜର ପ୍ରାଣ ନେଇ କିଏ କୁଆଡ଼େ ପଳାଇ ଗଲେ। ହନୁମାନ ଡେଇଁ ଡେଇଁ ଗୋଟିଏ ମହଲରୁ ଅନ୍ୟ ମହଲକୁ ଯାଇ ସବୁ ଭସ୍ମ କରିବାକୁ ଲାଗିଲେ। ବାୟୁ ସହାୟତା କଲେ। ଅଗ୍ନି ନିଜର ମିତ୍ରପୁତ୍ରଙ୍କ କାର୍ଯ୍ୟରେ ସହାୟତା କଲେ। ଲଙ୍କାର ବହୁ ଅଞ୍ଚଳ ଧୂ-ଧୂ ହୋଇ ଜଳିବାକୁ ଲାଗିଲା। ବହୁ ଯନ୍ତ୍ର ଓ ସୁଡଙ୍ଗ ନଷ୍ଟ ହୋଇଗଲା, କିନ୍ତୁ ସୁନାର ଲଙ୍କା

ସେପର୍ଯ୍ୟନ୍ତ ଜଳିଲା ନାହିଁ । ସାରା ନଗରୀରେ ହାହାକାର ପଡ଼ିଗଲା । ସମସ୍ତେ ନିଜ ନିଜର ସାମଗ୍ରୀ, ପିଲାଛୁଆ, ସ୍ତ୍ରୀ ଓ ବୃଦ୍ଧମାନଙ୍କୁ ଧରି ବିଭିନ୍ନ ନିରାପଦ ସ୍ଥାନକୁ ଧାଇଁଲେ ।

କଥିତ ଅଛି, ଲଙ୍କାର ଗୋଟିଏ କୋଠରୀରେ ଶନିଦେବତା ବନ୍ଦୀ ହୋଇ ରହିଥିଲେ । ହନୁମାନଙ୍କର ପାଦ ବାଜି ସେ କୋଠରୀର ଦ୍ୱାର ଭାଙ୍ଗିଗଲା । ଶନି ଦେବତା ହନୁମାନଙ୍କୁ ପଗ୍ଚରି ସବୁ ବୁଝିନେଲେ ଏବଂ ଏକ ଆଡ଼ଦୃଷ୍ଟିରେ ଲଙ୍କାକୁ ଟିକିଏ ଗ୍ଚହିଁଦେଲେ । ସେତିକିରେ କେବଳ ବିଭୀଷଣଙ୍କ ଘରକୁ ଛାଡ଼ି ସମଗ୍ର ଲଙ୍କା ଜଳିପୋଡ଼ି ପାଉଁଶ ହୋଇଗଲା । ସେ ହନୁମାନଙ୍କୁ ବର ଦାନ କରି କହିଲେ ଯେ, ଲଙ୍କାର ଧ୍ୱଂସ ଅତି ନିକଟ । ତା'ପରେ ସେ ଗ୍ଚଲିଗଲେ । ଶନି ଦେବତାଙ୍କୁ ମୁକ୍ତ କରି ହନୁମାନ ଯେତେବେଳେ ଦେଖିଲେ ଯେ, ସାରା ଲଙ୍କା ଧ୍ୱସ୍ତ ହୋଇଗଲା ଏବଂ ଆଉ ବିପଦର ସମ୍ଭାବନା ନାହିଁ, ସେତେବେଳେ ସେ ସମୁଦ୍ରରେ ପ୍ରବେଶ କରି ସ୍ନାନ କଲେ ଏବଂ ତା'ପରେ ସୀତାଙ୍କ ନିକଟକୁ ଫେରିଆସିଲେ । ମା' ସୀତା ଭଗବାନଙ୍କ ନିମିତ୍ତ ନିଜର ଚୂଡ଼ାମଣି ବାହାର କରି ହନୁମାନଙ୍କ ହାତରେ ଦେଲେ ଏବଂ ଶୀଘ୍ର ତାହାଙ୍କୁ ଉଦ୍ଧାର କରିବା ନିମିତ୍ତ କହିଲେ । ସୀତାଙ୍କୁ ପ୍ରଣାମ କରିସାରି ହନୁମାନ ଘୋର ଗର୍ଜନ କରି କରି ଲଙ୍କାଗଡ଼ରୁ ଫେରିଲେ ।

ଜାମ୍ବବାନ ଅଙ୍ଗଦ ଆଦି ଆହାର ତ୍ୟାଗ କରି ଏକ ପାଦରେ ଦଣ୍ଡାୟମାନ ହୋଇ ହନୁମାନଙ୍କର ପ୍ରତୀକ୍ଷା କରିଥିଲେ । ଦୂରରୁ ତାଙ୍କର ହର୍ଷଧ୍ୱନି ଶୁଣି ସେମାନେ କାର୍ଯ୍ୟ ସିଦ୍ଧ ହେଲା ବୋଲି ଅନୁମାନ କରିନେଲେ । ସମସ୍ତେ ଆଗକୁ ଆସି ପ୍ରେମରେ ତାହାଙ୍କୁ ଆଲିଙ୍ଗନ କଲେ । ତା'ପରେ ସମସ୍ତେ ଖିଆପିଆ କରି ଓ ମଧୁବନ ଧ୍ୱସ୍ତ କରି ଭଗବାନଙ୍କ ନିକଟରେ ପହଞ୍ଚିଲେ । ହନୁମାନ ମା' ସୀତାଙ୍କର ଦୁରବସ୍ଥା କଥା କରୁଣ ଭାଷାରେ ବର୍ଣ୍ଣନା କଲେ । ଲଙ୍କାର ଐଶ୍ୱର୍ଯ୍ୟ, ରାବଣର ଶକ୍ତି, ଇତ୍ୟାଦିର ଟିକିନିଖି ବିବରଣ ଭଗବାନଙ୍କୁ ଦେଲେ । ଭଗବାନ କହିଲେ, "ହନୁମାନ ! ତୁମପରି ଉପକାରୀ ସଂସାରରେ ଆଉ କେହି ନାହିଁ । ମୁଁ ତୁମକୁ ଏହାର ପ୍ରତିଦାନରେ କଣ ଦେବି ? ମୁଁ ତୁମଠାରେ ଚିରଋଣୀ ।" ଭଗବାନଙ୍କର ଏହି କଥା ଶୁଣି ହନୁମାନ ବ୍ୟାକୁଳ ହୋଇଗଲେ; ଚରଣ ତଳେ ପଡ଼ି ପ୍ରେମମଗ୍ନ ହୋଇଗଲେ । ଭଗବାନ ରାମ ତାଙ୍କୁ ଉଠାଇ ଆଣି କୁଣ୍ଢାଇ ଧରିଲେ ଏବଂ ତାହାଙ୍କୁ ଅନନ୍ୟ ଭକ୍ତିର ବରଦାନ ଦେଲେ । ଭଗବାନ ଶଙ୍କରଙ୍କର ଅଭିଳାଷ ପୂର୍ଣ୍ଣ ହେଲା ।

ଯେଉଁ କାମ ପାଇଁ ସେ ହନୁମାନ ରୂପ ଧାରଣ କରିଥିଲେ, ତାହା ପୂର୍ଣ୍ଣ ହୋଇଗଲା ।



(୩)

ହନୁମାନଙ୍କ ଜୀବନର ଏହା ବିଶେଷତ୍ୱ ଯେ, ଯେଉଁମାନେ ତାଙ୍କର ସଂସ୍ପର୍ଶରେ ଆସିଥିଲେ, ସେ ସେମାନଙ୍କୁ କୌଣସି ନା କୌଣସି ପ୍ରକାରେ ନେଇ ଭଗବାନଙ୍କ ପାଖରେ ପହଞ୍ଚାଇ ଦେଇଥିଲେ । ଲଙ୍କାରେ ବିଭୀଷଣ ତାହାଙ୍କ ସହିତ ଭେଟିଥିଲେ । ହନୁମାନଙ୍କର ସଂସର୍ଗ ଓ ଆଳାପରେ ସେ ଏତେ ପ୍ରଭାବିତ ହୋଇ ଯାଇଥିଲେ ଯେ, ରାବଣର ପରିପୂର୍ଣ୍ଣ ରାଜସଭାରେ ସେ ହନୁମାନଙ୍କ ପକ୍ଷ ନେଇଥିଲେ ଏବଂ ଶେଷରେ ରାବଣକୁ ଛାଡ଼ି ରାମଙ୍କର ଶରଣ ନେଇଥିଲେ । ତାଙ୍କୁ ଶରଣକୁ ନେବାକୁ ସୁଗ୍ରୀବ ବିରୋଧ କରିବା ସତ୍ତ୍ୱେ ଯେତେବେଳେ ଭଗବାନ ଶରଣାଗତର ରକ୍ଷା କରିବା ଉଚିତ ବୋଲି ଘୋଷଣା କରିଦେଲେ, ସେତେବେଳେ ହନୁମାନ କେତେ ଯେ ଆନନ୍ଦିତ ହେଲେ, ତାହା ଭାଷାରେ ବର୍ଣ୍ଣନା କରି ହେବ ନାହିଁ । ଅଙ୍ଗଦଙ୍କୁ ସଙ୍ଗରେ ନେଇ ପ୍ରଥମେ ହନୁମାନ ବିଭୀଷଣଙ୍କ ପାଖକୁ ମହା ଆନନ୍ଦରେ ଚାଲିଗଲେ ଏବଂ ତାଙ୍କୁ ଭଗବାନଙ୍କ ପାଖକୁ ନେଇ ଆସିଲେ । ତାଙ୍କର ଏକମାତ୍ର କାମ ଥିଲା, ଭଗବାନଙ୍କର ସେବା କରିବା; ଭଗବାନଙ୍କ ଶରଣରେ ଆସୁଥିବା ଲୋକର ସହାୟତା କରିବା ।

ଯେତେବେଳେ ସମୁଦ୍ରରେ ସେତୁବନ୍ଧ ବନ୍ଧା ହେଲା, ସେତେବେଳେ ହନୁମାନ କେତେ ଯେ ପାହାଡ଼ ନେଇ ଆସିଲେ ତାହା କଳନା କରାଯାଇ ପାରିବ ନାହିଁ । ସେତୁବନ୍ଧ ପୂର୍ଣ୍ଣ ହେଉ ହେଉ ଉତ୍ତର ଦିଗରୁ ସେ ଗୋଟିଏ ବଡ଼ ପାହଡ଼ ନେଇ ଆସୁଥିଲେ । ଇନ୍ଦ୍ରପ୍ରସ୍ଥରୁ କିଛି ଦୂର ଆସିବା ପରେ, ସେ ଜାଣି ପାରିଲେ ଯେ, ସେତୁବଂଧର କାମ ପୂର୍ଣ୍ଣ ହୋଇ ସାରିଛି । ସେ ବିଚାର କଲେ, ଏତେ ବଡ଼ ପାହାଡ଼ ନେଇ ଆଉ କଣ କରିବି, ଏଠାରେ ରଖିଦେବି । ଏପରି ଭାବି ସେ ପାହାଡ଼କୁ ସେଠାରେ ରଖିଦେଲେ; କିନ୍ତୁ ସେ ପାହାଡ଼ ସାଧାରଣ ପାହାଡ଼ ନ ଥିଲା । ସେ ନିଜେ ପ୍ରକଟ ହୋଇ ହନୁମାନଙ୍କୁ କହିଲା, "ଭକ୍ତରାଜ, ମୁଁ କି ଅପରାଧ କରିଥିଲି ଯେ, ଆପଣଙ୍କର ଚରଣକମଳର ସ୍ପର୍ଶ ଲାଭ କରି ମଧ୍ୟ ଭଗବାନ ରାମଚନ୍ଦ୍ରଙ୍କ ସେବାରୁ ବଞ୍ଚିତ ହୋଇଗଲି ? ମୋତେ ଏଠାରେ ଛାଡ଼ନ୍ତୁ ନାହିଁ । ପୃଥିବୀରେ ସ୍ଥାନ ନ ହେଲେ, ମୋତେ

ସମୁଦ୍ରରେ ବୁଡ଼ାଇ ଦିଅନ୍ତୁ । ଭଗବାନଙ୍କ କାମରେ ଆସିଲେ ତ ଭଲ କଥା, ନଚେତ୍ ଏ ଜୀବନରେ କି ପ୍ରୟୋଜନ ?''

ହନୁମାନ କହିଲେ, ''ଗିରିରାଜ ! ବାସ୍ତବରେ ତୁମେ ଧନ୍ୟ, ତୁମର ଏ ନିଷ୍ଠା ଦେଖି ମୋ ମନରେ ଆସୁଛି ଯେ, ମୁଁ ତୁମକୁ ନେଇଯିବି; କିନ୍ତୁ ଭଗବାନଙ୍କ ତରଫରୁ ଘୋଷଣା ହୋଇ ସାରିଲାଣି ଯେ, ଆଉ ପର୍ବତ ଆଣ ନାହିଁ । ମୁଁ ନିରୁପାୟ, ତଥାପି ମୁଁ ତୁମ ପାଇଁ ଭଗବାନଙ୍କୁ ପ୍ରାର୍ଥନା କରିବି ଏବଂ ସେ ଯେପରି ଆଜ୍ଞା ଦେବେ, ମୁଁ ତୁମ ପାଇଁ ସେପରି ବ୍ୟବସ୍ଥା କରିଦେବି ।''

ହନୁମାନ ଭଗବାନଙ୍କ ପାଖକୁ ଗଲେ । ସେ ଗିରିରାଜଙ୍କର ମନର କଥା ଓ ପ୍ରାର୍ଥନା ଭଗବାନଙ୍କଠାରେ ନିବେଦନ କଲେ । ଭଗବାନ କହିଲେ, ''ସେହି ପର୍ବତ ମୋର ପ୍ରଥମ ପ୍ରେମପାତ୍ର ଅଟେ । ତାହାକୁ ତୁମେ ଉଦ୍ଧାର କରିଅଛ । ତାକୁ କହ, ଦ୍ୱାପରରେ ମୁଁ କୃଷ୍ଣରୂପରେ ଅବତାର ନେଇ ତାକୁ ମୋ କାମରେ ଲଗାଇବି ଏବଂ ସାତଦିନ ପର୍ଯ୍ୟନ୍ତ ନିଜର ଅଙ୍ଗୁଳି ଉପରେ ରଖି ବ୍ରଜବାସୀଙ୍କୁ ରକ୍ଷା କରିବି ।'' ହନୁମାନ ବ୍ରଜଭୂମିକୁ ଯାଇ ଗୋବର୍ଦ୍ଧନକୁ ଭଗବାନଙ୍କର ସନ୍ଦେଶ ଦେଲେ । ହନୁମାନଙ୍କ କୃପାରେ ଗୋବର୍ଦ୍ଧନ ଗିରି ଭଗବାନଙ୍କର ପରମ କୃପାପାତ୍ର ହୋଇ ନିତ୍ୟଲୀଳାର ପରିକର ହୋଇଗଲେ ।

卐 卐 卐 卐

ସୁବେଳ ପର୍ବତ ଉପରେ ଭଗବାନ ପତ୍ରଶଯ୍ୟାରେ ଶୋଇ ରହିଥିଲେ । ସୁଗ୍ରୀବଙ୍କ କୋଳରେ ତାଙ୍କର ମସ୍ତକ ଥିଲା । ଅଙ୍ଗଦ ଓ ହନୁମାନ ଭଗବାନଙ୍କର ଚରଣ ସେବା କରୁଥିଲେ । ଧନୁ ଓ ତୂଣୀର ପାଖରେ ରଖାଯାଇଥିଲା । ଲକ୍ଷ୍ମଣ ପଛରେ ବୀରାସନରେ ବସି ଭଗବାନଙ୍କୁ ଚାହିଁ ରହିଥିଲେ । ଭଗବାନ ନିଜ ହାତରେ ବାଣ ସଳଖାଉଥିଲେ । ଏହି ସମୟରେ ଚନ୍ଦ୍ରଙ୍କୁ ଦେଖି ଭଗବାନ ପଚାରିଲେ, ''ନିଜ ନିଜ ବୁଦ୍ଧି ଅନୁସାରେ ତୁମ୍ଭେମାନେ କହ, ଚନ୍ଦ୍ରମାଙ୍କ ମଧ୍ୟରେ କଳାଛାଇ କିପରି ହେଲା ?'' ସୁଗ୍ରୀବ, ବିଭୀଷଣ, ଅଙ୍ଗଦ ନିଜ ନିଜର ବିଚାର ଅନୁସାରେ ତାହାର କାରଣ କହିଲେ । ସବା ଶେଷରେ ହନୁମାନ କହିଲେ, ''ପ୍ରଭୋ ! ଚନ୍ଦ୍ରମା ଆପଣଙ୍କର ସେବକ । ଆପଣଙ୍କର ତାଙ୍କଠାରେ ଅନନ୍ତ ପ୍ରେମ । ସେ ଆପଣଙ୍କୁ ନିଜର ହୃଦୟରେ ରଖିଛନ୍ତି ଏବଂ ଆପଣ ତାହାଙ୍କର ହୃଦୟରେ ରହିଛନ୍ତି ।'' ଭଗବାନ ହସିବାକୁ ଲାଗିଲେ । ସମସ୍ତେ ଅତ୍ୟନ୍ତ ପ୍ରସନ୍ନ ହେଲେ ।

ଏହାକୁ ଲକ୍ଷ୍ୟ କରି କୁହାଯାଇଛି—

**କହ ହନୁମଂତ ସୁନହୁ ପ୍ରଭୁ ସସି ତୁହ୍ମାର ପ୍ରିୟ ଦାସ ।**
**ତବ ମୂରତି ବିଧୁ ଉର ବସତି ସୋଇ ସ୍ୟାମତା ଅଭାସ ॥**

ହନୁମାନଙ୍କୁ ସବୁଠାରେ ଭଗବାନଙ୍କର ଦର୍ଶନ ମିଳୁଥିଲା । ଚନ୍ଦ୍ରମା ମଧ୍ୟରେ ସେ ଯେ ଭଗବାନଙ୍କର ଦର୍ଶନ କରିବେ, ସେଥିରେ ଆଶ୍ଚର୍ଯ୍ୟ କଣ ?

ରାମରାବଣ ଯୁଦ୍ଧରେ ହନୁମାନ କେତେ ଯେ ଅସୁରଙ୍କୁ ନିଧନ କଲେ, ତାହାର କଳନା ନାହିଁ । ସମୟ ସମୟରେ ସେ ଯୁଦ୍ଧରେ ରାମ, ଲକ୍ଷ୍ମଣ, ବିଭୀଷଣ, ଜାମ୍ବବାନ ଆଦି ସମସ୍ତଙ୍କୁ ସହାୟତା କରିଥିଲେ । ମେଘନାଦଙ୍କ ସହିତ ଯୁଦ୍ଧ କରିବା ସମୟରେ ଲକ୍ଷ୍ମଣଙ୍କୁ ବଡ଼ ଭୟଙ୍କର ଭାବରେ ଶକ୍ତି-ଭେଦ ହୋଇଗଲା । ସେ ରଣଭୂମିରେ ମୂର୍ଚ୍ଛିତ ହୋଇ ପଡ଼ି ଯାଇଥିଲେ । ମେଘନାଦଙ୍କ ସହିତ ଅନେକ ସୈନ୍ୟ ତାଙ୍କୁ ଉଠାଇ ନେଇଯିବାକୁ ଚେଷ୍ଟା କଲେ । କିନ୍ତୁ ସେମାନେ ଏକତ୍ର ହୋଇ ମଧ୍ୟ ଲକ୍ଷ୍ମଣଙ୍କୁ ଭୂମିରୁ ଉଠାଇ ପାରିଲେ ନାହିଁ । ହନୁମାନ ତାଙ୍କୁ ଅନାୟାସରେ ଉଠାଇ ନେଇ ରାମଙ୍କ ପାଖରେ ପହଞ୍ଚାଇ ଦେଲେ । ତାଙ୍କୁ ମୂର୍ଚ୍ଛିତ ଅବସ୍ଥାରେ ଦେଖି ରାମ ଶୋକାକୁଳ ହୋଇଗଲେ । ଜାମ୍ବବାନ କହିଲେ, ''ଲଙ୍କାରେ ସୁଷେଣ ନାମରେ ଜଣେ ବୈଦ୍ୟ ଅଛନ୍ତି । ଯଦି ଯେ ବର୍ତ୍ତମାନ ଆସିବେ, ଲକ୍ଷ୍ମଣ ସୁସ୍ଥ ହୋଇଯିବେ ।''

ହନୁମାନ ଲଙ୍କା ନଗରକୁ ଗଲେ । ସେ ଭାବିଲେ ଯେ, ଶତ୍ରୁପକ୍ଷର ବୈଦ୍ୟ ରାତ୍ରିରେ ଆସି ନ ପାରନ୍ତି । ତେଣୁ ସେ ତାଙ୍କର ଘର ଉଠାଇ ନେଇ ଚାଲିଆସିଲେ । ସୁଷେଣ ରାମଙ୍କ ସୈନ୍ୟ ମଧ୍ୟରେ ଲକ୍ଷ୍ମଣଙ୍କୁ ଦେଖିଲେ ଏବଂ କହିଲେ, ସୂର୍ଯ୍ୟୋଦୟ ପୂର୍ବରୁ ଆଜି ରାତିକ ମଧ୍ୟରେ ଯଦି ଦ୍ରୋଣାଚଳରୁ ଔଷଧ ଅଣାଯାଇ ପାରିବ, ତେବେ ଲକ୍ଷ୍ମଣ ବଞ୍ଚିଯିବେ । ହନୁମାନ ଭଗବାନଙ୍କୁ ସ୍ମରଣ କରି ଦ୍ରୋଣାଚଳକୁ ଯାତ୍ରା କଲେ । ଏହି ଖବର ରାବଣକୁ ମିଳିଗଲା । ସେ କାଳନେମିକୁ ପଠାଇ, ହନୁମାନ ଯେପରି ସୂର୍ଯ୍ୟୋଦୟ ପୂର୍ବରୁ ଫେରିବେ ନାହିଁ, ସେପରି ଷଡ଼ଯନ୍ତ୍ର କଲା । କାଳନେମି ଋଷି ବେଶ ଧାରଣ କରି ହନୁମାନଙ୍କୁ ଭୁଲାଇ ରଖିବାକୁ ଚେଷ୍ଟା କଲା । କିନ୍ତୁ ମାୟାପତିଙ୍କ ଦୂତ ଉପରେ କିଏ ବା ମାୟା ପ୍ରଭାବ ପକାଇ ପାରିବ ? ଦୈବଯୋଗରେ ହନୁମାନଙ୍କୁ ଏକଥା ଜଣା ପଡ଼ିଗଲା । ସେ କପଟୀ ଋଷିରାଜଙ୍କୁ ମୃତ୍ୟୁର ଗୁରୁଦକ୍ଷିଣା ଦେଇ ଗନ୍ତବ୍ୟ ପଥରେ ଆଗେଇ ଗଲେ ।

ହନୁମାନ ଦ୍ରୋଣାଚଳରେ ପହଞ୍ଚିଗଲେ । ରାତ୍ରି ସମୟ । ସେ ଔଷଧିମାନଙ୍କୁ

ଚିହ୍ନି ପାରିଲେ ନାହିଁ । ଔଷଧିମାନେ ମଧ୍ୟ ନିଜକୁ ଲୁଗ୍ୱଇ ରଖିଲେ । ହନୁମାନ ବିଳମ୍ବ କରିବା ଜାଣି ନ ଥିଲେ । ରାତାରାତି ତାଙ୍କର ଲଙ୍କାରେ ପହଞ୍ଚିବାର ଥିଲା । ତେଣୁ ସେ ଦ୍ରୋଣାଚଳକୁ ଉପାଡ଼ି ସଙ୍ଗରେ ନେଇ ଆସିଲେ । ଫେରିବା ସମୟରେ ବାଟରେ ଅଯୋଧ୍ୟା ପଡ଼ିଲା । ତାଙ୍କୁ ଦୂରରୁ ଦେଖି ଭରତ ଭାବିଲେ ଯେ, ସେ କୌଣସି ରାକ୍ଷସ ହେବ । ତେଣୁ ସେ ଗୋଟିଏ ହାଲୁକା ବାଣ ମାରିଦେଲେ । ବାଣ ବାଜିବାରୁ ହନୁମାନ 'ରାମ ରାମ' କହି ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ତାହାଙ୍କ ମୁଖରୁ ରାମ ରାମ ଧ୍ୱନି ଶୁଣି ଭରତ ତାଙ୍କ ପାଖକୁ ଦୌଡ଼ିଗଲେ ଏବଂ ଅତ୍ୟନ୍ତ ଚେଷ୍ଟା କରି ମୂର୍ଚ୍ଛା ଭଙ୍ଗ କଲେ । ଶେଷରେ ସେ କହିଲେ, ''ମୋ ହୃଦୟରେ ଯଦି ରାମଙ୍କ ପ୍ରତି ପ୍ରକୃତ ଭକ୍ତି ଥାଏ, ତେବେ ଏହି ବୀର ଶୀଘ୍ର ଜୀବିତ ହୋଇ ଉଠନ୍ତୁ ।'' ଏତିକିରେ ହନୁମାନ ଉଠି ବସିଲେ । ସମସ୍ତ କଥା ହନୁମାନ ଶୁଣାଇଲେ । ଭରତ ନିଜକୁ ଅତ୍ୟନ୍ତ ନିନ୍ଦା କଲେ ଏବଂ ତାଙ୍କୁ ବାଣ ଉପରେ ବସାଇ ଲଙ୍କାକୁ ପଠାଇ ଦେବାପାଇଁ କହିଲେ । ହନୁମାନ ଅତ୍ୟନ୍ତ ନମ୍ରତା ସହକାରେ ତାହା ଅସ୍ୱୀକାର କଲେ ଏବଂ ଦ୍ରୋଣାଚଳକୁ ଧରି ଶୀଘ୍ର ଯାଇ ଲଙ୍କାରେ ପହଞ୍ଚିଗଲେ । ସେତେବେଳକୁ ଶ୍ରୀରାମ ଅତ୍ୟନ୍ତ ବ୍ୟାକୁଳ ହେଉଥିଲେ । ହନୁମାନ ଆସିବାରୁ ସେ ତାଙ୍କୁ ହୃଦୟରେ ଜାବୋଡ଼ି ଧରିଲେ । ସୁଷେଣ ଉପଗ୍ୱର କଲେ ଏବଂ ଲକ୍ଷ୍ମଣ ସୁସ୍ଥ ହୋଇଗଲେ । ଗ୍ୱରିଆଡ଼େ ହନୁମାନଙ୍କ କୀର୍ତ୍ତିର ପ୍ରଶଂସା ହେବାକୁ ଲାଗିଲା । ହନୁମାନ ସୁଷେଣଙ୍କୁ ନେଇ ତାଙ୍କ ଘର ସହିତ ଯଥାସ୍ଥାନରେ ରଖି ଆସିଲେ ।

卐 卐 卐 卐

ରାତ୍ରିସମୟ । ହନୁମାନ ପହରା ଦେଉଥାନ୍ତି । ଅହିରାବଣ ବିଭୀଷଣର ବେଶ ଧରି ଛାଉଣୀ ଭିତରକୁ ପଶି ଆସିଲା । ହନୁମାନ ତାକୁ ଡାକି ପଗ୍ୱରିଲେ, ''ଭାଇ ! ଏତେ ରାତିରେ କେଉଁଠୁ ଆସୁଛ ?'' ସେ କହିଲା, ''ଭଗବାନଙ୍କ ଆଜ୍ଞାରେ ସଂଧ୍ୟା କରିବାକୁ ଯାଇଥିଲି, ଆସିବାରେ ବିଳମ୍ବ ହୋଇଗଲା । ସେ ମୋତେ ଶୀଘ୍ର ଆସିବାକୁ କହିଥିଲେ ।'' ଏପରି କହି ସେ ଛାଉଣୀ ଭିତରେ ପଶିଗଲା । ସମସ୍ତେ ଶୋଇ ଯିବା ପରେ ଅହିରାବଣ ରାମଲକ୍ଷ୍ମଣଙ୍କୁ ନିଜ କାନ୍ଧରେ ବସାଇ ନେଇଗଲା । ଭଗବାନଙ୍କୁ ଭଲା କିଏ ନେଇ ଯାଇ ପାରିବ ? ଲକ୍ଷ୍ମଣ କେବେ ଶୁଅନ୍ତି ନାହିଁ; କିନ୍ତୁ ପ୍ରଭୁ ଯେତେବେଳେ ନିଜର ଭକ୍ତଙ୍କର ମହିମା ପ୍ରକଟ କରିବାକୁ ଇଚ୍ଛା କରନ୍ତି, ସେତେବେଳେ ସେ ସାଧାରଣ ମନୁଷ୍ୟପରି ଲୀଳା କରନ୍ତି । ଆଜି ହନୁମାନଙ୍କର

ମହିମା ପ୍ରକଟ କରିବାର ଥିଲା, ତେଣୁ ସେ ଚୁପ୍‌ଚାପ୍ ଅହିରାବଣ କାନ୍ଧ ଉପରେ ବସି ଚାଲିଗଲେ ।

ସକାଳ ହେବାରୁ ସମଗ୍ର ଛାଉଣୀରେ କୋଳାହଳ ପଡ଼ିଗଲା । ସୁଗ୍ରୀବ, ଜାମ୍ବବାନ, ବିଭୀଷଣ ସମସ୍ତେ ବ୍ୟାକୁଳ ହୋଇଗଲେ । ହନୁମାନ ସେ ଘଟଣା ସମସ୍ତଙ୍କୁ ଶୁଣାଇଲେ । ବିଭୀଷଣ କହିଲେ, "ଏହା ଅହିରାବଣର ମାୟା । ମୋର ବେଶ ଆଉ କେହି ଧରି ପାରିବେ ନାହିଁ ।" ହନୁମାନ କହିଲେ, "ସେ ଯେତେ ବଳବାନ ହେଲେ ମଧ୍ୟ ଯେତେ ଗୁପ୍ତ ସ୍ଥାନରେ ମୋ ପ୍ରଭୁଙ୍କୁ ରଖିଥିଲେ ମଧ୍ୟ, ମୁଁ ସେଠାକୁ ଯିବି ଏବଂ ତାକୁ ବଧ କରି ପ୍ରଭୁଙ୍କୁ ନେଇ ଆସିବି ?" ହନୁମାନ ବାହାରି ପଡ଼ିଲେ । ଦୈବଯୋଗକୁ ବାଟରେ ଏପରି ଘଟଣା ଘଟିଲା ଯେ, ଅହିରାବଣ ରାମଲକ୍ଷ୍ମଣଙ୍କୁ ନାଗଲୋକକୁ ନେଇ ଯାଇଥିବାର କଥା ସ୍ପଷ୍ଟ ଜଣା ପଡ଼ିଗଲା । ସେଠାକୁ ଯାଇ ହନୁମାନ ମହଲ ମଧ୍ୟରେ ପ୍ରବେଶ କରିବାକୁ ଚେଷ୍ଟା କଲେ; କିନ୍ତୁ ମକରଧ୍ୱଜ ତାହାଙ୍କ ପଥରୋଧ କଲା । ସେ ପଚାରିଲା, "ତୁମେ କିଏ ? ଜାଣ ନାହିଁ, ମୁଁ ବୀର ହନୁମାନଙ୍କର ପୁତ୍ର ଅଟେ । ଚୋରପରି ପଶିଲେ ଭଲ କରି ପାଠ ଶିଖାଇ ଦେବି, ଜାଣି ଥାଅ ।" ଏହା ଶୁଣି ହନୁମାନ ଆଶ୍ଚର୍ଯ୍ୟ ହୋଇଗଲେ । ସେ କହିଲେ, "ମୋର ତ ପୁତ୍ର ବୋଲି କେହି ନାହିଁ, ତୁମେ କେଉଁଠାରୁ ଆସିଗଲ ?" ମକରଧ୍ୱଜ କହିଲା, "ଯେତେବେଳେ ଆପଣ ଲଙ୍କା ଭସ୍ମ କରି ସମୁଦ୍ରରେ ସ୍ନାନ କରୁଥିଲେ, ସେତେବେଳେ ଗୋଟିଏ ମାଛ ଆପଣଙ୍କର ଝାଳ ପିଇ ଦେଇଥିଲା । ତାହାରି ଗର୍ଭରୁ ମୋର ଜନ୍ମ ହୋଇଛି ।" ହନୁମାନ ତାହାକୁ ରାମଲକ୍ଷ୍ମଣଙ୍କର ଠାବ ପଚାରିଲେ । ସେ କହିଲା, "ମୁଁ ସେସବୁ କିଛି ଜାଣେ ନାହିଁ । ଆଜି ଅହିରାବଣ କାହାକୁ ବଳି ଦେବାକୁ ସ୍ଥିର କରିଛନ୍ତି । ସେଠାକୁ କାହାରିକୁ ଯିବାର ଆଜ୍ଞା ନାହିଁ । ମୁଁ ଆପଣଙ୍କୁ ମଧ୍ୟ ସେଠାକୁ ଯିବାକୁ ଦେବି ନାହିଁ ।"

ଏହା ଫଳରେ ଦୁହିଁଙ୍କ ମଧ୍ୟରେ ଯୁଦ୍ଧ ଲାଗିଗଲା । ବାପାପରି ପୁଅ । ଶେଷରେ ହନୁମାନ ମକରଧ୍ୱଜକୁ ତା ନିଜ ଲାଂଜରେ ବାନ୍ଧିପକାଇ ଦେବୀଙ୍କ ମନ୍ଦିର ମଧ୍ୟରେ ପ୍ରବେଶ କଲେ । ତାଙ୍କର ଚରଣ ସ୍ପର୍ଶ ପାଇ ଦେବୀ ଭୂମି ମଧ୍ୟରେ ପଶିଗଲେ ଏବଂ ସେ ପାଟି ଆଁ କରି ଦେବୀଙ୍କ ସ୍ଥାନରେ ଦଣ୍ଡାୟମାନ ହୋଇଗଲେ । ରାକ୍ଷସମାନେ ବୁଝିଲେ ଯେ, ଦେବୀ ଅତ୍ୟନ୍ତ ପ୍ରସନ୍ନ ହୋଇ ପ୍ରକଟ ହୋଇଗଲେ । ଜୋର୍‌ସୋର୍ ପୂଜା ହେଲା । ଦେବୀଙ୍କ ପାଇଁ ଯାହା କିଛି ଆସିଥିଲା, ତାହା ଦେବୀଙ୍କ ସମ୍ମୁଖରେ ରଖିଦେଲେ ।

ସେଥିରେ ଫୁଲ, ପତ୍ର, ଫଳ, ଯାହାକଛି ଥିଲା, ହନୁମାନ ସବୁ ଗିଳି ପକାଇଲେ । ବଳିଦାନ ସମୟରେ ରାମଲକ୍ଷ୍ମଣଙ୍କୁ ଅଣାଗଲା । ଏହି ସମୟରେ ରାକ୍ଷସମାନେ ସେମାନଙ୍କୁ ଅନେକ ପ୍ରକାର ପରିହାସ କଲେ । ରାମଲକ୍ଷ୍ମଣ ଚୁପ୍ ହୋଇ ସହିଯାଉଥାନ୍ତି । ଶେଷରେ ଅହିରାବଣ କହିଲା, "ବର୍ତ୍ତମାନ ତୁମେମାନେ ନିଜର ଇଷ୍ଟଙ୍କୁ ସ୍ମରଣ କର ।" ଭଗବାନ୍ ହସି ହସି କହିଲେ, "ଦେଖ, ତୁମର ଦେବୀ ତୁମକୁ ହିଁ ଖାଇଯିବେ ନାହିଁ ତ ?" ସେତେବେଳକୁ ତୀକ୍ଷ୍ଣ ତରବାରୀ ଧରି ଅହିରାବଣ ପ୍ରସ୍ତୁତ ହୋଇ ସାରିଲାଣି । ଏହି ସମୟରେ ହନୁମାନ ଗର୍ଜନ କରି ଭଗବାନଙ୍କ ପାଖରେ ପହଞ୍ଚିଗଲେ ଏବଂ ଅହିରାବଣ ହାତରୁ ଖଣ୍ଡା ଛଡ଼ାଇ ନେଇ ଅହିରାବଣ ଓ ଅନ୍ୟ ସମସ୍ତ ରାକ୍ଷସଙ୍କୁ ସଂହାର କରି, ରାମଲକ୍ଷ୍ମଣଙ୍କୁ କାନ୍ଧରେ ବସାଇ ଶିବିରକୁ ନେଇ ଆସିଲେ । ଚାରିଆଡ଼େ ଆନନ୍ଦର ଧ୍ୱନି ଓ କୋଳାହଳ ଖେଳିଗଲା । ହନୁମାନଙ୍କର ଜୟଜୟକାର ଚାରିଆଡ଼େ ହେବାକୁ ଲାଗିଲା ।

卐 卐 卐 卐

ହନୁମାନ ସର୍ବଦା ଭଗବାନଙ୍କ ସେବାରେ ଲାଗି ରହିଥିଲେ । କିନ୍ତୁ ବର୍ତ୍ତମାନ ଯୁଦ୍ଧ ସମୟର କଥା । ଦିନରେ କେବେ ଭଗବାନଙ୍କ ପାଖରେ ରହୁଥିଲେ, ତ କେବେ ଯୁଦ୍ଧକ୍ଷେତ୍ରରେ ଯୁଦ୍ଧ କରୁଥିଲେ ଏବଂ ରାତିରେ ଭଗବାନଙ୍କର ଚରଣ ସେବା କରୁଥିଲେ । ତାହାଙ୍କ ଠାରୁ ଧର୍ମ, ଜ୍ଞାନ ଓ ପ୍ରେମର କଥା ଶୁଣୁଥିଲେ । ଯେତେବେଳେ ଭଗବାନ ତାଙ୍କର ଶରୀର ଉପରେ ନିଜର କରକମଳ ପକାଇ ଦିଅନ୍ତି, ସେତେବେଳେ ହନୁମାନଙ୍କର ସମସ୍ତ କ୍ଳାନ୍ତି ଦୂର ହୋଇଯାଏ । ଯେତେବେଳେ ଭଗବାନ ରାମ ଶୋଉଥିଲେ, ସେତେବେଳେ ହନୁମାନ ନିଜର ଲମ୍ବ ଲାଞ୍ଜରେ ଏକ ଦୁର୍ଗ ଗଢ଼ି, ନିଜେ ଦୁର୍ଗ ଦ୍ୱାର ମୁହଁରେ ବସି ଯାଉଥିଲେ ଏବଂ ରାତି ସାରା ପହରା ଦେଉଥିଲେ । ପ୍ରାତଃକାଳରେ ପୁଣି ଥରେ ଯୁଦ୍ଧ ଆରମ୍ଭ ହୋଇ ଯାଉଥିଲା । କୌଣସି କଠିନ କାମ ପଡ଼ିଲେ ଜାମ୍ବବାନ, ସୁଗ୍ରୀବ, ଅଙ୍ଗଦ—ସମସ୍ତେ ହନୁମାନଙ୍କର ଶରଣ ନେଉଥିଲେ ।

ରାବଣ ସହିତ ଯୁଦ୍ଧ କରିବା ସମୟରେ ଥରେ ହନୁମାନ ତାକୁ ଏପରି ଏକ ଭୁସି ମାରିଲେ ଯେ, ସେ ମୂର୍ଚ୍ଛିତ ହୋଇଗଲା । ତାପରେ ସଚେତ ହୋଇ ସେ ହନୁମାନଙ୍କର ଭୂରିଭୂରି ପ୍ରଶଂସା କରିଥିଲା ଏବଂ ସ୍ୱୀକାର କରିଥିଲା ଯେ, ଜୀବନରେ ସେ ଏପରି କୌଣସି ବୀରଙ୍କ ସହିତ କେବେ ଯୁଦ୍ଧ କରି ନ ଥିଲା । ରାବଣର ପ୍ରହାରରେ ଲକ୍ଷ୍ମଣ ମୂର୍ଚ୍ଛିତ ହୋଇଗଲେ । ନିଜ ପୁତ୍ର

ମେଘନାଦପରି ରାବଣ ମଧ୍ୟ ଲକ୍ଷ୍ମଣଙ୍କୁ ଉଠାଇ ନେଇଯିବା ପାଇଁ ଇଚ୍ଛା କରିଥିଲା । କିନ୍ତୁ ସମସ୍ତ ଶକ୍ତି ଲଗାଇ ମଧ୍ୟ ସେ ଲକ୍ଷ୍ମଣଙ୍କୁ ଉଠାଇ ପାରି ନ ଥିଲା । ଏହା ଦେଖି ହନୁମାନ ସେଠାକୁ ଦୌଡ଼ିଗଲେ । ରାବଣର ବାଣରେ ସାରା ଶରୀର ରକ୍ତାକ୍ତ ହୋଇଗଲା, ତଥାପି ସେ ଲକ୍ଷ୍ମଣଙ୍କ ପାଖରେ ପହଞ୍ଚିଗଲେ ଏବଂ ରାବଣଙ୍କୁ ଏକ ଭୁସି ମାରି, ଲକ୍ଷ୍ମଣଙ୍କୁ ଫୁଲପରି ଉଠାଇ ରାମଙ୍କ ପାଖକୁ ନେଇଗଲେ । ରାମ ହନୁମାନଙ୍କୁ ଆଲିଙ୍ଗନ କଲେ ଏବଂ ଲକ୍ଷ୍ମଣଙ୍କୁ କହିଲେ, ''ଲକ୍ଷ୍ମଣ! ତୁମେ କାଳଙ୍କର ମହାକାଳ । ଦେବତାମାନଙ୍କର କାର୍ଯ୍ୟ ନିମନ୍ତେ ଅବତୀର୍ଣ୍ଣ ହୋଇଛ । ଏ ସମୟରେ ପୁଣି ମୂର୍ଚ୍ଛା ଯାଉଛ କାହିଁକି ?'' ରାମଙ୍କର କଥା ଶୁଣି ଲକ୍ଷ୍ମଣ ଉଠି ବସିଲେ ଏବଂ ପୁଣି ଦୁଇଗୁଣ ଉତ୍ସାହରେ ରଣଭୂମିରେ ପ୍ରବେଶ କଲେ । ହନୁମାନଙ୍କର ସତ୍‌ସାହସରେ ଏତେବଡ଼ ସଙ୍କଟ କ୍ଷଣକ ମଧ୍ୟରେ ଦୂର ହୋଇଗଲା ।

卐 卐 卐 卐

ରାବଣ ବଧ କରି ରାମ ବିଜୟୀ ହେଲେ । କିନ୍ତୁ ବର୍ତ୍ତମାନ ସୀତାଙ୍କ ନିକଟକୁ ବିଜୟ ସନ୍ଦେଶ ନେଇ କିଏ ଯିବ ? ଭଗବାନ ହନୁମାନଙ୍କୁ ଡକାଇ କହିଲେ, ''ହନୁମାନ ! ସୀତା ତୁମକୁ ଅତି ସ୍ନେହ କରନ୍ତି । ବର୍ତ୍ତମାନ ତୁମେ ଏହି ବିଜୟ ସମାଗ୍ଭର ଶୁଣାଇବା ନିମିତ୍ତ ତାହାଙ୍କ ପାଖକୁ ଯାଅ । ମହାରାଜ ବିଭୀଷଣଙ୍କର ଆଜ୍ଞା ନେଇ ଲଙ୍କାରେ ପ୍ରବେଶ କରିବ ଏବଂ ମୋର, ଲକ୍ଷ୍ମଣଙ୍କର ତଥା ସୁଗ୍ରୀବଙ୍କର କୁଶଳ ସମାଗ୍ଭର କହିବ ଏବଂ ରାବଣର ନିଧନ କଥା କହିବ ।''

ହନୁମାନ ଲଙ୍କାରେ ପ୍ରବେଶ କଲେ । ଲଙ୍କାବାସୀ ରାକ୍ଷସଗଣ ତାଙ୍କୁ ଅତ୍ୟନ୍ତ ସମ୍ମାନ କଲେ । ସେ ତ ବିଭୀଷଣଙ୍କର ଆଜ୍ଞା ପାଇଥିଲେ, ତେଣୁ ସେ ଅଶୋକ ବନର ଶିଶୁଗଛ ତଳେ ବସିଥିବା ସୀତାଙ୍କ ନିକଟରେ ପହଞ୍ଚିଲେ । ଚରଣରେ ସାଷ୍ଟାଙ୍ଗ ପ୍ରଣାମ କରି ତାଙ୍କୁ ସମଗ୍ର ବୃତ୍ତାନ୍ତ ଜଣାଇଲେ । ସୀତା ଅତ୍ୟଧିକ ଆନନ୍ଦରେ ଏକକ୍ଷଣ ପର୍ଯ୍ୟନ୍ତ କିଛି କହି ପାରିଲେ ନାହିଁ । ତାଙ୍କର କଣ୍ଠ ହର୍ଷଗଦ୍‌ଗଦ ହୋଇଗଲା, ଅଶ୍ରୁରେ ଚକ୍ଷୁ ପୂର୍ଣ୍ଣ ହୋଇଗଲା । ସୀତା କହିଲେ, ''ପୁତ୍ର, ମୁଁ ଏ ଆନନ୍ଦ ସମାଗ୍ଭର ପାଇ କିଛି କହି ପାରିଲି ନାହିଁ, ଏଥିପାଇଁ ଅନ୍ୟ କିଛି ଭାବିବ ନାହିଁ । ଏହାଠାରୁ ବଳି ଆନନ୍ଦର ସମ୍ବାଦ ମୋ ପାଇଁ ଆଉ କଣ ଥାଇ ପାରେ ! ମୁଁ ଚିନ୍ତା କରୁଛି, ଏହି ସମ୍ବାଦ ପାଇଁ ତୁମକୁ କଣ ଦେବି ? କାରଣ ଆନନ୍ଦ ସମ୍ବାଦ ଶୁଣାଇଥିବା ବ୍ୟକ୍ତିଙ୍କୁ କିଛି ନା କିଛି ଦେବାର ପ୍ରଥା ରହିଛି । କିନ୍ତୁ ମୁଁ ତୁମକୁ ଯଦି

ତ୍ରିଲୋକର ସମସ୍ତ ସମ୍ପତ୍ତି, ସମସ୍ତ ଐଶ୍ୱର୍ଯ୍ୟ ଦେଇଦିଏ, ତଥାପି ମୋର ମନ ତୃପ୍ତ ହେବ ନାହିଁ । ମୁଁ ଚାହେଁ, ତୁମର ହୃଦୟରେ ଭଗବାନଙ୍କ ପ୍ରତି ଅନନ୍ୟ ପ୍ରେମ, ଅନନ୍ୟ ଭକ୍ତି ରହୁ ଏବଂ ମୁଁ ତୁମର ଋଣୀ ହୋଇ ରହେଁ । ସମସ୍ତ ସଦ୍‌ଗୁଣ ତୁମର ମନରେ ନିବାସ କରୁ ଓ ରଘୁନାଥଙ୍କର କୃପା ସଦାସର୍ବଦା ତୁମ ଉପରେ ରହୁ ।''

ହନୁମାନ ଯୋଡହସ୍ତରେ କହିଲେ, ''ମାତା ! ତୁମ ବିନା ଏପରି ସ୍ନେହପୂର୍ଣ୍ଣ କଥା ଆଉ କିଏ କହିବ ? ମୋ ହୃଦୟରେ ରାମସୀତାଙ୍କର ଯୁଗଳ-ମୂର୍ତ୍ତିର ସ୍ମୃତି ସଦାସର୍ବଦା ଜାଗ୍ରତ ରହୁ । ମୁଁ ତାଙ୍କର ଚରଣକମଳର ଛତ୍ରଛାୟାରେ ସଦାସର୍ବଦା ରହେ । ଏହାଠାରୁ ବଳି ଆଉ କ'ଣ ଆପଣ ମୋତେ ଦେବେ ? ମୁଁ ଆପଣଙ୍କର କି ସେବା କରିବି, ଆପଣ ଆଜ୍ଞା କରନ୍ତୁ ।'' ସୀତା କହିଲେ, ''ମୁଁ ଭଗବାନଙ୍କର ଦର୍ଶନ ନିମିତ୍ତ ଅତ୍ୟନ୍ତ ଉତ୍ସୁକ । ଆଉ ଏକକ୍ଷଣ ମଧ୍ୟ ବିଳମ୍ବ ସହିପାରୁ ନାହିଁ ।'' ହନୁମାନ ଶୀଘ୍ର ସେଠାରୁ ଚାଲିଆସି ଭଗବାନଙ୍କ ନିକଟରେ ପହଞ୍ଚିଲେ । ସେ ଭଗବାନଙ୍କୁ ସୀତାଙ୍କର ଆନନ୍ଦ, ତାହାଙ୍କର ଦର୍ଶନୋତ୍କଣ୍ଠା ଏବଂ ପ୍ରାର୍ଥନା ନିବେଦନ କଲେ । ଭଗବାନ ସୀତାଙ୍କୁ ନେଇ ଆସିବା ନିମିତ୍ତ ବିଭୀଷଣଙ୍କୁ ଆଜ୍ଞା ଦେଲେ ।

卐 卐 卐 卐

ଭଗବାନ ରାମ ସୀତା, ଲକ୍ଷ୍ମଣ, ସୁଗ୍ରୀବ ଓ ବିଭୀଷଣ ଆଦିଙ୍କ ସହିତ ପୁଷ୍ପକ ବିମାନ ଉପରେ ବସି ଅଯୋଧ୍ୟାକୁ ଫେରିଆସିଲେ । ପ୍ରୟାଗରେ ସେ ହନୁମାନଙ୍କୁ ଡାକି କହିଲେ, ''ହନୁମାନ ! ଭରତ କଣ କରୁଛନ୍ତି, ତୁମେ ଯାଇ ଅଯୋଧ୍ୟାରେ ଦେଖିଆସ । ମୋର ବିଚ୍ଛେଦରେ ଏକ ଏକ କ୍ଷଣ ତାଙ୍କୁ କଳ୍ପପରି ଜଣାଯାଉଥିବ । ତାଙ୍କୁ ମୋର ସମାଚାର ଶୁଣାଇବ ଏବଂ ତାହାଙ୍କ ସମାଚାର ନେଇ ମୋ ପାଖକୁ ଫେରି ଆସିବ ।'' ହନୁମାନ ପ୍ରସ୍ଥାନ କଲେ ।

ଅଯୋଧ୍ୟାରେ ଭଗବାନଙ୍କ ନିମିତ୍ତ ଭରତ କେତେ ଯେ ବ୍ୟାକୁଳ ଥିଲେ, ତାହା କେହି କଳ୍ପନା କରିପାରିବେ ନାହିଁ । ହନୁମାନ ତାଙ୍କର ଦଶା ଦେଖିଲେ । ସେ ଜଟାର ମୁକୁଟ ବାନ୍ଧି କୁଶାସନରେ ବସିଥିଲେ । ତାଙ୍କର ଶରୀର ଶୁଖି କଣ୍ଟାପରି ହୋଇଯାଇଥିଲା । ଆଖିରୁ ଅନବରତ ଲୁହ ଝରୁଥିଲା ଏବଂ ମୁଖରେ ସର୍ବଦା ରାମନାମ ଉଚ୍ଚାରଣ ହେଉଥିଲା । ସେ ଏପରି ତନ୍ମୟ ଥିଲେ ଯେ, କିଏ ଆସିଛି, ତାହା ଜାଣିପାରି ନ ଥିଲେ । ହନୁମାନ ସ୍ୱୟଂ ତାଙ୍କର ଧ୍ୟାନ ଭଙ୍ଗ କରି କହିଲେ, ''ଯାହାଙ୍କ ବିରହରେ ଆପଣ ଦୁଃଖୀ ହେଉଅଛନ୍ତି, ଯାହାଙ୍କ ନାମ ଓ ଗୁଣ ଆପଣ କୀର୍ତ୍ତନ କରୁଛନ୍ତି, ସେହି

ଭଗବାନ ରାମ, ସେହି ଦେବତା-ମୁନିମାନଙ୍କର ରକ୍ଷକ ଆଜି ମା' ଜାନକୀ ତଥା ଲକ୍ଷ୍ମଣ ଆଦିଙ୍କ ସହିତ କୁଶଳରେ ଆସୁଛନ୍ତି ।'' ହନୁମାନଙ୍କର କଥା ଶୁଣି ତାହାଙ୍କର ଧ୍ୟାନ ଭାଙ୍ଗିଗଲା । ତାଙ୍କ ଶରୀରରେ ନବୀନ ପ୍ରାଣ ସଂଗ୍ରର ହେଲା । ତାଙ୍କର ପ୍ରତି ଲୋମକୂପ ଅମୃତରେ ସିକ୍ତ ହୋଇଗଲା । ସେ ଶୀଘ୍ର ଉଠି ହନୁମାନଙ୍କୁ ନିଜ ଗଳାରେ ଲଗାଇଦେଲେ । ପରିଚୟ ଜାଣିବା ପରେ, ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ବାରମ୍ବାର ଭଗବାନଙ୍କର କୁଶଳବାର୍ତ୍ତା ପଗ୍ରରିଲେ ।

ଭରତ କହିଲେ, ''ଭାଇ ! ତୁମକୁ ମୁଁ ଆଉ କ'ଣ ଦେବି ? ତୁମର ଋଣୀ ହୋଇ ରହିଲେ ଆନନ୍ଦିତ ହେବି ।'' ହନୁମାନ ତାହାଙ୍କର ଚରଣରେ ପଡ଼ିଗଲେ ଏବଂ ତାଙ୍କର ଭୂରିଭୂରି ପ୍ରଶଂସା କଲେ । କହିଲେ, ''ଭଗବାନ ରାମ ପ୍ରାୟ ଆପଣଙ୍କର ଚର୍ଚ୍ଚା କରନ୍ତି । ଆପଣଙ୍କର ସକଳ ସଦ୍‌ଗୁଣ ବର୍ଣ୍ଣନା କରନ୍ତି ।'' ଭରତଙ୍କର ଅନୁମତି ନେଇ ହନୁମାନ ସେଠାରୁ ବିଦାୟ ନେଲେ ।

卐 卐 卐 卐

ରାମଙ୍କର ରାଜ୍ୟାଭିଷେକ ହେଲା । ସମସ୍ତଙ୍କୁ ଉପହାର ଦିଆଗଲା । ସ୍ୱୟଂ ଭଗବାନ ନିଜ ହାତରେ ସୁଗ୍ରୀବ, ବିଭୀଷଣ ଆଦିଙ୍କୁ ବହୁମୂଲ୍ୟ ମଣି, ରତ୍ନ, ବସ୍ତ୍ର ଓ ଭୂଷଣ ଆଦି ପ୍ରଦାନ କଲେ । କିନ୍ତୁ ଜଣାନାହିଁ, ସେ କ'ଣ ଭାବି କେଜାଣି, ହନୁମାନଙ୍କୁ କିଛି ଦେଲେ ନାହିଁ । ସମସ୍ତ ସଭାସଦ୍ ଭାବିଲେ, ଭଗବାନ କଣ ହନୁମାନଙ୍କୁ ଭୁଲିଗଲେ! ମାତା ସୀତା ଭଗବାନଙ୍କର ରହସ୍ୟ ଜାଣିଥିଲେ, କିନ୍ତୁ ଅନ୍ୟମାନଙ୍କ ସମକ୍ଷରେ ହନୁମାନଙ୍କର ମହତ୍ତ୍ୱ ପ୍ରକଟ କରିବା ନିମିତ୍ତ ସେ ଅନ୍ୟ ଏକ ଲୀଳା ରଚନା କଲେ । ନିଜର କଣ୍ଠରୁ ବହୁମୂଲ୍ୟ ମଣିର ହାର ଖୋଲି ସେ ହନୁମାନଙ୍କୁ ପିନ୍ଧାଇଦେଲେ । ସମସ୍ତେ ମାତାଙ୍କର ପ୍ରଶଂସା କରିବାକୁ ଲାଗିଲେ । ହନୁମାନ ବଡ଼ ପ୍ରେମର ସହିତ ତାହା ସ୍ୱୀକାର କଲେ । କିନ୍ତୁ ପରକ୍ଷଣରେ ସମସ୍ତେ ଚକିତ ହୋଇ ହନୁମାନଙ୍କୁ ଦେଖିବାକୁ ଲାଗିଲେ । ସେମାନେ ଦେଖିଲେ ଯେ, ହନୁମାନ ମଣିମାଳାର ଗୋଟିଏ ଗୋଟିଏ ଦାନା ଛିଣ୍ଡାଇ ଭାଙ୍ଗି ଫିଙ୍ଗି ଦେଉଛନ୍ତି ।

ଏସବୁ ଦେଖି ଭଗବାନ ରାମ ମୁରୁକି ମୁରୁକି ହସୁଥାନ୍ତି । କିନ୍ତୁ ସୀତା ଟିକିଏ ଗମ୍ଭୀର ହୋଇଯାଇଥିଲେ । ଭରତ, ଶତ୍ରୁଘ୍ନ, ଲକ୍ଷ୍ମଣ ଓ ଅନ୍ୟମାନେ ଆଶ୍ଚର୍ଯ୍ୟ ହୋଇ ଏ ଘଟଣା ଦେଖୁଥିଲେ । କିନ୍ତୁ ସଭାସଦ୍‌ମାନେ ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । ସେମାନେ କହିଲେ ''ହନୁମାନ ! ତୁମେ ଏ କଣ କରୁଛ ? ଏହି ବହୁମୂଲ୍ୟ ମଣିଗୁଡ଼ିକ ମାଟିରେ ମିଶାଇ ଦିଅ ନାହିଁ ।'' ଆଉ

କେହି କେହି କହିଲେ ''ଜାତିରେ ତ ସହଜେ ବାନର, ଏହାଙ୍କୁ ମଣିର ମୂଲ୍ୟ କଅଣ ଜଣା ?'' ବହୁ ଲୋକ ଅସନ୍ତୁଷ୍ଟ ହେବାର ଦେଖି ହନୁମାନ କହିଲେ, ''ଭାଇମାନେ! ଆପଣମାନେ କାହିଁକି ବିରକ୍ତ ହେଉଛନ୍ତି ? ମୁଁ ତ ମଣିର ମହତ୍ତ୍ୱ ପରୀକ୍ଷା କରୁଛି । ଏହା ଅତ୍ୟନ୍ତ ସୁନ୍ଦର ଦେଖାଯାଉଛି ଏବଂ ବହୁତ ମୂଲ୍ୟରେ ମଧ୍ୟ କିଣାଯାଇଥିବ । ଏହା ମଧ୍ୟ ସମ୍ଭବ ଯେ, କୌଣସି ଲୋକ ଦାମ୍ ଦେଇ ଏହାକୁ କିଣି ପାରିବ ନାହିଁ । ଏହାକୁ ପିନ୍ଧିଲେ ନିଶ୍ଚୟ ସୌନ୍ଦର୍ଯ୍ୟ ବୃଦ୍ଧି ପାଇବ । କିନ୍ତୁ ମହତ୍ତ୍ୱପୂର୍ଣ୍ଣ ବସ୍ତୁର ପରିଚୟ କଣ ଏତିକି? ମୁଁ ମହତ୍ତ୍ୱର ମାପଦଣ୍ଡ ବୋଲି ଯାହା ବୁଝିଛି, ତାହା ହେଲା, ଯେଉଁ ବସ୍ତୁ ଭିତରେ ଭଗବାନଙ୍କର ଦର୍ଶନ ହୁଏ, ସେହି ବସ୍ତୁ ହିଁ ମହତ୍ତ୍ୱପୂର୍ଣ୍ଣ । ଏହି ସୁନ୍ଦର ସୁନ୍ଦର ମଣିଗୁଡ଼ିକ ମଧ୍ୟରେ ଭଗବାନ ଅଛନ୍ତି କି ନାହିଁ, ମୁଁ ତାହା ଦେଖୁଥିଲି । ମୋତେ ସେପରି ଦେଖାଯାଉ ନାହିଁ । ଏହାର ଏହି ଚମକପ୍ରଦ ପ୍ରଭା ମୋତେ ଅନ୍ଧକାରମୟ ମନେ ହେଉଛି । ଏଥିରେ ମୋର କି ପ୍ରୟୋଜନ ? ମୋର ଏହା କି କାମରେ ଆସିବ? ଏହା ଦିନେ ନା ଦିନେ ଭାଙ୍ଗିଯିବ ଏବଂ ନଷ୍ଟ ହୋଇଯିବ । ତେଣୁ ମୁଁ ଏହାକୁ ଭାଙ୍ଗି ଫୋପାଡ଼ି ଦେଉଛି ।''

ହନୁମାନଙ୍କଠାରୁ ଏକଥା ଶୁଣି ବହୁ ଲୋକ ମଣି ଛିଣ୍ଡାଇବା ଓ ଭାଙ୍ଗିବାର ରହସ୍ୟ ବୁଝିଗଲେ; ତଥାପି ଏପରି କେତେକ ଲୋକ ଥିଲେ, ଯାହାଙ୍କର ଶଙ୍କା ପୂର୍ଣ୍ଣରୂପେ ଦୂର ହୋଇ ନ ଥିଲା । ସେମାନେ ପଗ୍ଚରିଲେ, ''ତୁମର ହୃଦୟରେ କଣ ରାମ ଅଛନ୍ତି ? ଯଦି ଅଛନ୍ତି, ତେବେ ଆମକୁ ଦେଖାଇଦିଅ ଏବଂ ଯଦି ନାହାନ୍ତି, ତେବେ ବୃଥାଟାରେ ଏହି ହୃଦୟର ଭାର କାହିଁକି ବହନ କରୁଛ ?'' ହନୁମାନ କହିଲେ, ''ମୋ ହୃଦୟରେ ନିଶ୍ଚିତରୂପେ ଭଗବାନ ଅଛନ୍ତି—ତୁମେ ଯେପରି ସମ୍ମୁଖରେ ଭଗବାନଙ୍କୁ ଦେଖୁଛ, ମୁଁ ସେପରି ତାଙ୍କୁ ମୋ ହୃଦୟରେ ଦେଖୁଛି ।'' ଏପରି କହି ସେ ଦୁଇହାତରେ ନିଜର ଛାତି ଚିରିଦେଇ ନିଜ ହୃଦୟ ସିଂହାସନରେ ଭଗବାନ ରାମ, ମାତା ଜାନକୀ ଏବଂ ରାମଙ୍କର ଭାଇମାନେ ବିରାଜମାନ ଥିବାର ଦେଖାଇଦେଲେ । ସମସ୍ତେ ହନୁମାନଙ୍କର ମହିମା ଗାନ କରିବାକୁ ଲାଗିଲେ । ଭଗବାନ ସିଂହାସନରୁ ଉଠିଆସି ହନୁମାନଙ୍କୁ ଆଲିଙ୍ଗନ କଲେ ଏବଂ ରାମଙ୍କ ଶରୀରର ସ୍ପର୍ଶ ପାଇ ହନୁମାନଙ୍କର ବକ୍ଷ ଆଗ ଅପେକ୍ଷା ଆହୁରି ଅଧିକ ଦୃଢ଼ ହୋଇଗଲା । ଭଗବାନ ହନୁମାନଙ୍କୁ ଉପହାର ଦେଇ ନ ଥିବାର ରହସ୍ୟ ବର୍ତ୍ତମାନ ସମସ୍ତେ ବୁଝିଗଲେ । ମାତା ସୀତା ମନ୍ଦହାସ କରିବାକୁ ଲାଗିଲେ ।

卐 卐 卐 卐

ହନୁମାନ ଯେପରି ପୁତ୍ର, ସୀତା ସେପରି ମାତା। ଦୁହିଁଙ୍କର ସ୍ନେହର କଥା ଆଉ କଣ କହିବା ! ମାତା ସୀତାଙ୍କର ସେବା କରିବା ପାଇଁ ହଜାର ହଜାର ଦାସଦାସୀ ଥିଲେ; ଇଙ୍ଗିତମାତ୍ରେ ଯାହା ଚାହୁଁଥିଲେ, ହୋଇଯାଉଥିଲା। ତଥାପି ସେଥିରେ ମାତାଙ୍କର ତୃପ୍ତି ହେଉ ନ ଥିଲା। ଥରେ ମାତା ନିଜର ସ୍ନେହର ପୁତ୍ର ହନୁମାନଙ୍କୁ ନିଜ ହାତରେ ରୋଷାଇ କରି ଖୁଆଇବାକୁ ବିଚାର କଲେ । ଆନନ୍ଦ ମନରେ ଅନେକ ପ୍ରକାର ଖାଦ୍ୟ ପ୍ରସ୍ତୁତ କଲେ । ହନୁମାନ ଭୋଜନ କରିବାକୁ ବସିଲେ । ମାତାଙ୍କ ହାତରେ ତିଆରି ରୋଷାଇ କେତେ ମିଠା ! ହନୁମାନ ଖାଇବାକୁ ଲାଗିଲେ । ସେ କେତେ ନା କେତେ ଖାଇଦେଲେ, ତାହା ତାଙ୍କୁ ଜଣା ନ ଥିଲା । ସମସ୍ତ ଖାଦ୍ୟ ପଦାର୍ଥ ଶେଷ ହେବାକୁ ବସିଲା, ତଥାପି ହନୁମାନଙ୍କ ଖିଆ ସରିଲା ନାହିଁ । ହନୁମାନଙ୍କର ଏପରି କୃତ୍ୟ ଦେଖି ମାତା ସୀତା ଆଶ୍ଚର୍ଯ୍ୟ ହୋଇଗଲେ । ସେ ନିରୁପାୟ ହୋଇ ଭଗବାନ ରାମଙ୍କୁ ସ୍ମରଣ କଲେ । ସୀତା ଦେଖିଲେ, ହନୁମାନଙ୍କ ବେଶରେ ସ୍ୱୟଂ ଶଙ୍କର ବସି ଭୋଜନ କରୁଛନ୍ତି । ପ୍ରଳୟ ସମୟରେ ସାରା ସଂସାରକୁ ଉଦରସ୍ଥ କରିବାକୁ ସମର୍ଥ ହୋଇଥିବା ମହାକାଳଙ୍କର ମଧ୍ୟ କାଳ ହନୁମାନଙ୍କର ପେଟ କିଛି ଖାଦ୍ୟରେ କିପରି ପୂର୍ଣ୍ଣ ହୋଇପାରିବ ? ସେ ହନୁମାନଙ୍କର ପଛକୁ ଯାଇ ତାଙ୍କର ମସ୍ତକରେ ଲେଖିଦେଲେ—'ଓଁ ନମଃ ଶିବାୟ'। ଏହିପରି ସେ ଏକପ୍ରକାରେ ହନୁମାନଙ୍କର ସ୍ତୁତି କଲେ ଏବଂ ତାପରେ ପୁଣି ଭୋଜନ ସାମଗ୍ରୀ ଦେଲେ । ବର୍ତ୍ତମାନ ହନୁମାନ ତୃପ୍ତ ହୋଇଗଲେ । ଏହିପରି ସ୍ୱୟଂ ମାଆ ସୀତା ମଧ୍ୟ ହନୁମାନଙ୍କୁ ଶିବରୂପରେ ସ୍ୱୀକାର କରିଛନ୍ତି ।

卐 卐 卐 卐

ଭଗବାନ ରାମଙ୍କର ସମସ୍ତ ସେବା ହନୁମାନ କରୁଥିଲେ। ସେ ନିଜ କାମରେ ଏପରି ସାବଧାନ ରହୁଥିଲେ ଯେ, ଅନ୍ୟମାନଙ୍କୁ ସେବା କରିବାର ଅବସର ମିଳୁ ନ ଥିଲା। ଭରତ, ଶତ୍ରୁଘ୍ନ ଏବଂ ଲକ୍ଷ୍ମଣ ମଧ୍ୟ ଭଗବାନଙ୍କର ସେବା ପାଇଁ ଲାଳାୟିତ ଥିଲେ। ଶେଷରେ ସମସ୍ତେ ମିଳି ଗୋଟିଏ ଉପାୟ ଚିନ୍ତା କଲେ। ସେମାନେ ବିଚାର କଲେ, ଗୋଟିଏ ଦୈନିକ କାର୍ଯ୍ୟନିର୍ଘଣ୍ଟ ତିଆରି କରାଯାଉ, ଯେପରି ସମସ୍ତଙ୍କୁ କିଛି କିଛି ସମୟ ଭଗବାନଙ୍କର ସେବା କରିବାର ଅବସର ମିଳିବ, କିନ୍ତୁ କାର୍ଯ୍ୟ ନିର୍ଘଣ୍ଟରେ ହନୁମାନଙ୍କ ପାଇଁ କିଛି ସମୟ ରଖାଯିବ ନାହିଁ। ଯୋଜନା ପ୍ରସ୍ତୁତ ହୋଇଗଲା ଏବଂ ସର୍ବସମ୍ମତି କ୍ରମେ ମଂଜୁର ହୋଇଗଲା; ମାତା ସୀତାଙ୍କ ଦ୍ୱାରା ଏହି ଯୋଜନା ଭଗବାନଙ୍କ

ନିକଟରେ ଉପସ୍ଥାପନ କରାଗଲା । ଏହା ଦେଖି ଭଗବାନ ମୁରୁକି ମୁରୁକି ହସିଲେ । ସେ ହନୁମାନଙ୍କୁ ତାହା ଦେଖାଇ ପଚାରିଲେ, ''କୁହ ହନୁମାନ, ତୁମେ ଏହି ଯୋଜନାକୁ ପସନ୍ଦ କରୁଛ ନା ନାହିଁ ?'' ହନୁମାନ କହିଲେ, ''ଭଗବାନ ! ସମସ୍ତଙ୍କର ସମ୍ମତିରେ ଓ ମାତାଙ୍କର ସୁପାରିଶରେ ଏହା ପ୍ରସ୍ତୁତ କରାଯାଇଛି, ତେଣୁ ଆପଣ ସ୍ୱୀକାର କରି ନିଅନ୍ତୁ । ଯେଉଁ ସେବା କାର୍ଯ୍ୟ କାହାରି ଦାୟିତ୍ୱରେ ନାହିଁ, ସେହି ସେବା ମୋ ଭାଗରେ ରହିଲା ।'' ହନୁମାନ ସମସ୍ତଙ୍କୁ କହିଲେ, ''ଖୁବ୍ ଭଲଭାବରେ ବିଚାର କରି ଦେଖି ନିଅନ୍ତୁ ।'' ସମସ୍ତେ ଦେଖିଲେ, କୌଣସି କାମ ଛାଡ଼ି ଦିଆଯାଇନାହିଁ । ସମସ୍ତେ ହନୁମାନଙ୍କର କଥା ମାନିନେଲେ । ସେହି ଯୋଜନା ଭଗବାନଙ୍କ ଦ୍ୱାରା ମଂଜୁର ହୋଇଗଲା ।

ହନୁମାନ କହିଲେ, ''ଭଗବାନ ! ଦରବାରରେ ପ୍ରଥା ଅଛି ଯେ, ଯେତେବେଳେ ମହାରାଜ ହାଇ ମାରିବେ, ସେତେବେଳେ ଫୁଟକି ମାରିବାକୁ ହେବ । ତେଣୁ ଏହି ସେବା କାର୍ଯ୍ୟ ମୋ ଉପରେ ରହିଲା ।'' ସମସ୍ତେ ଏହାକୁ ସାଧାରଣ କାମ ବୋଲି ଭାବିଲେ ଏବଂ ଭଗବାନ ମଧ୍ୟ ହସି ହସି ତାଙ୍କୁ ସ୍ୱୀକୃତି ଦେଇଦେଲେ । ସେବା ସମ୍ବନ୍ଧରେ ହନୁମାନଙ୍କର କିପରି ସୂକ୍ଷ୍ମଜ୍ଞାନ ଥିଲା, ତାହା ଦେଖି ଭରତ ଅବାକ ହୋଇଗଲେ । ବର୍ତ୍ତମାନ ହନୁମାନଙ୍କର ମନୋରଥ ପୂରିଗଲା । ଭଗବାନ ଚଲାବୁଲା କଲାବେଳେ, ଖାଇବା ସମୟରେ, ଶୋଇବା ସମୟରେ ସେ ସର୍ବଦା ତାଙ୍କର ପାଖେ ପାଖେ ରହିଲେ । ପୁଣି ଯେତେବେଳେ ଭଗବାନ କୁଆଡ଼େ ଯାଉଥିଲେ, ସେତେବେଳେ ହନୁମାନ ତାଙ୍କ ଆଗେ ଆଗେ ତାଙ୍କ ଆଡ଼କୁ ମୁହଁ କରି ପଛୁଆଁ ଚାଲୁଥିଲେ । ଯେତେବେଳେ ଭଗବାନ ଶୋଉଥିଲେ, ସେତେବେଳେ ସେ କିଛି ଦୂରରେ ଠିଆ ହୋଇ ଭଗବାନଙ୍କ ମୁଖକୁ ଚାହିଁ ରହୁଥିଲେ । କେହି କେହି ହନୁମାନଙ୍କର ଏହି କାମରେ ଆପତ୍ତି କରିଥିଲେ, କିନ୍ତୁ ହନୁମାନ ସେମାନଙ୍କୁ ଯୁକ୍ତି ଦେଖାଇ ନିରୁତ୍ତର କରି ଦେଇଥିଲେ ଯେ, ପ୍ରଭୁଙ୍କର କେତେବେଳେ ହାଇ ଆସିଯିବ, ଜଣା ନାହିଁ । ମାତା ସୀତାଦେବୀଙ୍କୁ ମଧ୍ୟ ଭଗବାନଙ୍କର ସେବା କରିବାରେ ଅସୁବିଧା ହେବାକୁ ଲାଗିଲା । ଲକ୍ଷ୍ମଣ ଓ ଶତ୍ରୁଘ୍ନ ମଧ୍ୟ ଘାବରେଇ ଗଲେ । ଘଟଣା ଦେଖି ଭଗବାନ ରାମ ଖୁବ୍ ହସୁଥିଲେ । ଶେଷରେ ମହାରାଣୀ ସୀତାଙ୍କ ଅନୁରୋଧରେ ଭଗବାନଙ୍କ ସେବା ପାଇଁ ହୋଇଥିବା ନୂତନ କାର୍ଯ୍ୟକ୍ରମଟି ବଦଳାଇ ଦିଆଗଲା ଏବଂ ହନୁମାନ ଆଗପରି ଭଗବାନଙ୍କର ସେବା କରିବାକୁ ଲାଗିଲେ ।

卐 卐 卐 卐

ଭଗବାନ ରାମ ହନୁମାନଙ୍କୁ ଅଧିକ ସ୍ନେହ କରୁଥିଲେ ବୋଲି ଭରତ, ଶତ୍ରୁଘ୍ନ ଆଦି ସମସ୍ତଙ୍କର ଧାରଣା ଥିଲା । ଯେତେବେଳେ ଭଗବାନଙ୍କୁ କିଛି କଥା ପଚାରିବାର ଥାଏ, ସେତେବେଳେ ସେମାନେ ହନୁମାନଙ୍କ ମାଧ୍ୟମରେ ପଚାରୁଥିଲେ । ହନୁମାନ ସ୍ୱୟଂ ମଧ୍ୟ ଭଗବାନଙ୍କୁ ଏବଂ ମାତା ସୀତାଙ୍କୁ ଅନେକ ପ୍ରଶ୍ନ ପଚାରୁଥିଲେ ଏବଂ ଜୀବ, ଶିବ ଆଦି ସମ୍ବନ୍ଧରେ ତତ୍ତ୍ୱଜ୍ଞାନ ପ୍ରାପ୍ତ କରୁଥିଲେ । ଭଗବାନ ରାମ ତାଙ୍କୁ ଅନେକ ଥର ତତ୍ତ୍ୱଜ୍ଞାନର ଉପଦେଶ ଦେଇଥିଲେ ଏବଂ ସମ୍ପୂର୍ଣ୍ଣ ବେଦାନ୍ତର ରହସ୍ୟ ବୁଝାଇଥିଲେ । ଅଧ୍ୟାତ୍ମ ରାମାୟଣର ପ୍ରଥମ ପ୍ରସଙ୍ଗରେ ଏହି ସମସ୍ତ ବିଷୟ ଦିଆଯାଇଛି । ବ୍ରହ୍ମାଣ୍ଡ ପୁରାଣରେ ମଧ୍ୟ ବର୍ଣ୍ଣନା ଅଛି ଯେ, ଭଗବାନ ଶ୍ରୀକୃଷ୍ଣାବତାରରେ ଯେଉଁ ଉପଦେଶ ଅର୍ଜୁନ ଏବଂ ଉଦ୍ଧବଙ୍କୁ ଦେଇଥିଲେ, ସେହି ଉପଦେଶ ଶ୍ରୀରାମାବତାରରେ ଆଞ୍ଜନେୟ ଶ୍ରୀହନୁମାନଙ୍କୁ ଶ୍ରୀରାମ ଦେଇଥିଲେ । ହନୁମାନ ଜ୍ଞାନର ମୂର୍ତ୍ତି ଥିଲେ, ଏହି କଥାର ପ୍ରମାଣ ଅନେକ ପ୍ରସଙ୍ଗରୁ ମିଳେ । ସ୍ୱୟଂ ଶିବଙ୍କ ପକ୍ଷରେ ଆଶ୍ଚର୍ଯ୍ୟର କଥା ବା କଣ ଅଛି !

ହନୁମାନ ବହୁତ ସେବା କରୁଥିବା ଦେଖି, ଭଗବାନ ବେଳେବେଳେ କହୁଥିଲେ, "ହନୁମାନ ! ତୁମେ ତ ମୋର ସ୍ୱରୂପ, ତୁମର ଏତେ ସେବା କରିବାର ଆବଶ୍ୟକ କଣ ? ତୁମେ ଧ୍ୟାନରେ ତନ୍ମୟ ରହ ।" ଦିନେ ହନୁମାନ କହିଦେଲେ, "ପ୍ରଭୋ ! ଆପଣଙ୍କର କହିବା ସତ୍ୟ, କିନ୍ତୁ ସେବା କରିବା ଦ୍ୱାରା ମୁଁ କଣ ଆପଣଙ୍କ ସ୍ୱରୂପରେ ରହେ ନାହିଁ । ସେବା କରିବା ସମୟରେ ମୁଁ କଣ ତନ୍ମୟ ହୋଇ ରହେ ନାହିଁ ? ଶରୀର ଦୃଷ୍ଟିରୁ ମୁଁ ଆପଣଙ୍କର ସେବକ । ଶରୀର ସର୍ବଦା ଆପଣଙ୍କର ଏବଂ ଆପଣଙ୍କର ଭକ୍ତମାନଙ୍କର ସେବାରେ ଲାଗି ରହୁ; ଏହା ହିଁ ଶରୀରର ଉପଯୁକ୍ତ ବିନିଯୋଗ । ଜୀବ ଦୃଷ୍ଟିରେ ମୁଁ ଆପଣଙ୍କର ଅଂଶ । ମୁଁ ଆପଣଙ୍କ ପାଖେ ପାଖେ ରହେ, ଆପଣଙ୍କଠାରୁ କେବେ ବିଚ୍ଛିନ୍ନ ନ ହୁଏ, ଏହା ସର୍ବଥା ବାଞ୍ଛନୀୟ । ତତ୍ତ୍ୱ ଦୃଷ୍ଟିରେ ମୁଁ ଆପଣଙ୍କର ସ୍ୱରୂପ । ସେ ଦୃଷ୍ଟିରେ କହିବା ବା ଶୁଣିବାର କଣ ଅଛି ?* ଭଗବାନ ହନୁମାନଙ୍କର ଏପରି କଥା ଶୁଣି ଅତ୍ୟନ୍ତ ପ୍ରସନ୍ନ ହୋଇଗଲେ ।

卐 卐 卐 卐

---

* ଦେହଦୃଷ୍ଟ୍ୟା ତୁ ଦାସୋଽହଂ ଜୀବଦୃଷ୍ଟ୍ୟା ତ୍ୱଦଂଶକଃ ।
ଆତ୍ମଦୃଷ୍ଟ୍ୟା ତ୍ୱମେବାହମିତି ମେ ନିଶ୍ଚିତା ମତିଃ ॥

ଭଗବାନ ରାମଙ୍କର ଅଶ୍ୱମେଧ ଯଜ୍ଞର ଘୋଡ଼ା ଛାଡ଼ି ଦିଆଗଲା । ଶତ୍ରୁଘ୍ନ, ପୁଷ୍କଳ, ଲକ୍ଷ୍ମୀନିଧି ଆଦି ବଡ଼ ବଡ଼ ବୀର ଏହାର ରକ୍ଷା ନିମିତ୍ତ ନିଯୁକ୍ତ ହେଲେ; ହନୁମାନ ମଧ୍ୟ ସେମାନଙ୍କ ସଙ୍ଗରେ ଗଲେ । ଅନେକ ସ୍ଥାନରେ ବଡ଼ ବଡ଼ ଯୁଦ୍ଧ ହେଲା; ହନୁମାନ ସେ ଯୁଦ୍ଧରେ କେତେ ଯେ ତତ୍ପରତା ଦେଖାଇଲେ, କେତେ ବୀରତ୍ୱର ସହିତ ଯୁଦ୍ଧ କଲେ, ତାହା ପଦ୍ମପୁରାଣର ପାତାଳ ଖଣ୍ଡରେ ବିସ୍ତାରିତଭାବରେ ବର୍ଣ୍ଣନା କରାଯାଇଛି । ଏଠାରେ କେବଳ ଘଟଣାର ଦିଗ୍ ଦର୍ଶନମାତ୍ର କରାଯାଇଛି ।

ଚକ୍ରାଙ୍କା ନଗରୀରେ ରାଜା ସୁବାହୁଙ୍କ ସହିତ ଯୁଦ୍ଧ ହେଉଥିଲା । ଅନେକ ବୀର ମରିଗଲେ; ଅନେକ ଆଘାତ ପ୍ରାପ୍ତ ହେଲେ; ଶେଷରେ ଯୁଦ୍ଧ ହନୁମାନ ଓ ସୁବାହୁଙ୍କ ମଧ୍ୟରେ ହେଉଥିଲା । ହନୁମାନ ସୁବାହୁଙ୍କ ଛାତିରେ ଏପରି ଏକ ଶକ୍ତ ଗୋଇଠା ମାରିଲେ ଯେ, ସେ ବେହୋସ୍ ହୋଇ ତଳେ ପଡ଼ିଗଲେ । ମୂର୍ଚ୍ଛା ଅବସ୍ଥାରେ ସୁବାହୁ ଦେଖିଲେ ଯେ, ସେ ଅଯୋଧ୍ୟାରେ ଅଛନ୍ତି; ଭଗବାନ ରାମ ସରଯୂ କୂଳରେ ଯଜ୍ଞ କରୁଛନ୍ତି ଏବଂ କୋଟି କୋଟି ବ୍ରହ୍ମାଣ୍ଡର ଅଧିପତି ବ୍ରହ୍ମା ଆଦି ଦେବତାମାନେ ତାଙ୍କର ସ୍ତୁତି କରୁଛନ୍ତି; ନାରଦାଦି ଋଷିମାନେ ବୀଣା, ମୃଦଙ୍ଗ ଆଦି ବଜାଇ ତାଙ୍କର ଗୁଣ କୀର୍ତ୍ତନ କରୁଛନ୍ତି ଏବଂ ସେମାନେ ମୂର୍ତ୍ତିମାନ ହୋଇ ତାଙ୍କର ଯଶୋଗାନ କରୁଛନ୍ତି । ତାଙ୍କର ସେହି ଶ୍ୟାମସୁନ୍ଦର ଛବି ଦେଖି ସୁବାହୁ ମୁଗ୍ଧ ହୋଇଗଲେ । ସେ ଏହି ଅବସ୍ଥାରେ ବହୁ ସମୟ ପର୍ଯ୍ୟନ୍ତ ପଡ଼ି ରହିଲେ ।

ଯେତେବେଳେ ତାଙ୍କର ମୂର୍ଚ୍ଛା ଭାଙ୍ଗିଲା, ସେତେବେଳକୁ ତାଙ୍କର ଅଜ୍ଞାନ ନଷ୍ଟ ହୋଇଯାଇଥିଲା । ସେ ଜଣେ ଋଷିଙ୍କର ଶାପର କଥା ଶୁଣାଇ ହନୁମାନଙ୍କର ମହିମା କୀର୍ତ୍ତନ କଲେ ଏବଂ କହିଲେ ଯେ, ତାଙ୍କର ଚରଣ ସ୍ପର୍ଶରେ ରାମତତ୍ତ୍ୱର ଜ୍ଞାନ ହୋଇ ଯାଇଥିଲା । ଯୁଦ୍ଧ ବନ୍ଦ କରି ଦିଆଗଲା ଏବଂ ସେଠାର ସମସ୍ତେ ଭେଟି ସାମଗ୍ରୀ ନେଇ ଭଗବାନ ରାମଙ୍କ ଦର୍ଶନ ପାଇଁ ଏବଂ ଯଜ୍ଞରେ ସେବା କାର୍ଯ୍ୟ କରିବାକୁ ଅଯୋଧ୍ୟା ଆସିଲେ । ହନୁମାନ ଯଜ୍ଞ-ଅଶ୍ୱ ସହିତ ଆଗକୁ ଚାଲିଲେ ।

ଦେବପୁରର ଶିବଭକ୍ତ ରାଜା ବୀରମଣିଙ୍କ ଦ୍ୱାରା ଯେତେବେଳେ ଯଜ୍ଞ-ଅଶ୍ୱ ବାନ୍ଧି ଦିଆଗଲା, ସେତେବେଳେ ବଡ଼ ଭୟଙ୍କର ଯୁଦ୍ଧ ହେଲା । ବୀରମଣିଙ୍କ ଭକ୍ତିରେ ପ୍ରସନ୍ନ ହୋଇ ସ୍ୱୟଂ ଭଗବାନ ଶଙ୍କର ତାଙ୍କ ପକ୍ଷରେ ଯୁଦ୍ଧ କଲେ । ଯୁଦ୍ଧରେ ଶତ୍ରୁଘ୍ନ, ପୁଷ୍କଳ ଆଦି ସମସ୍ତ ବୀର ମୂର୍ଚ୍ଛିତ ଏବଂ ମୃତପ୍ରାୟ ହୋଇଗଲେ । କେବଳ ଏକମାତ୍ର ହନୁମାନ ଲଢ଼ିବାକୁ ରହିଲେ । ତାହା ତ ଭଗବାନ ଶଙ୍କରଙ୍କର

ଲୀଳା ଥିଲା; ସେ ନିଜର ଭକ୍ତ ଏବଂ ଭଗବାନ ଦୁହିଁଙ୍କ ପକ୍ଷରୁ ଲଢୁଥିଲେ । ଦୁଇ ପକ୍ଷରେ ଶଙ୍କର; ତେବେ ଆଉ ହାରିବ କିଏ ? ହନୁମାନ ଗର୍ଜନ କରି କହିଲେ, "ମୁଁ ଜାଣିଥିଲି ଯେ, ଶଙ୍କର ରାମଙ୍କର ଭକ୍ତ, କିନ୍ତୁ ଏଠାରେ ତୁମ ଭକ୍ତିର କଥା ଜଣା ପଡ଼ିଗଲା । ଆମ୍ଭେମାନେ ଭଗବାନ ରାମଙ୍କର ଯଜ୍ଞ ପୂର୍ଣ୍ଣ କରିବା ପାଇଁ ଅଶ୍ୱକୁ ରକ୍ଷା କରୁଛୁ କିନ୍ତୁ ତୁମେ ଏଥିରେ ବିଘ୍ନ କରିବା ପାଇଁ ଯୁଦ୍ଧ କରୁଛ ।" ଶଙ୍କର କହିଲେ, "ଭାଇ ! ତୁମ କଥା ଠିକ୍ । ମୋ ଦ୍ୱାରା ଭଗବାନଙ୍କ ଭକ୍ତି କେଉଁଠି ହୋଇ ପାରୁଛି ! ତଥାପି ତୁମ କଥା ବଡ଼ ଭଲ ଲାଗୁଛି । ତୁମେ ମୋତେ ଭଗବାନଙ୍କ କଥା ସ୍ମରଣ କରାଇଦେଲ, କିନ୍ତୁ ମୁଁ କଣ କରିବି ? ମୁଁ ଭକ୍ତ ବୀରମଣିଙ୍କ ଭକ୍ତିରେ ଏପରି ପରବଶ ହୋଇଯାଇଛି, ମୋତେ ତାଙ୍କ ପକ୍ଷରେ ଯୁଦ୍ଧ କରିବାକୁ ହିଁ ପଡ଼ିବ ।"

ଭୀଷଣ ଯୁଦ୍ଧ ହେଲା । ହନୁମାନଙ୍କ ପ୍ରହାରରେ ଶଙ୍କରଙ୍କର ରଥ ଭାଙ୍ଗିଗଲା । ତାଙ୍କର ଆୟୁଧ ନିଷ୍ଫଳ ହୋଇଗଲା । ଶରୀର ରକ୍ତରେ ଜର୍ଜରିତ ହୋଇଗଲା । ନନ୍ଦୀ ପଳାଇ ଯିବାର ଉପକ୍ରମ କଲେ । ଶଙ୍କର ହନୁମାନଙ୍କୁ କହିଲେ, "ବୀର ! ତୁମେ ଧନ୍ୟ ! ତୁମର ଭଗବତ୍ ଭକ୍ତି ଧନ୍ୟ । ମୁଁ ତୁମର ବୀରତ୍ୱ ଓ ଭଗବତ୍ ଭକ୍ତି ଦେଖି ପ୍ରସନ୍ନ ହୋଇଛି । ଯଜ୍ଞ, ଦାନ ଓ ତପସ୍ୟା ଦ୍ୱାରା ଯେଉଁ ବର ପ୍ରାପ୍ତ ହୋଇପାରେ ନାହିଁ, ତୁମକୁ ସେପରି ବର ଦେବାକୁ ମୁଁ ପ୍ରସ୍ତୁତ ଅଛି । ମାଗ, ମାଗ; ତୁମର ଯାହା ଇଚ୍ଛା, ମାଗିନିଅ ।"

ହନୁମାନ କହିଲେ, "ଶଙ୍କର ! ଭଗବାନ ରାମଙ୍କ କୃପାରେ ମୋର କୌଣସି ବସ୍ତୁର କାମନା ନାହିଁ, ତଥାପି ଆଜି ଯୁଦ୍ଧରେ ତୁମେ ମୋ ଉପରେ ପ୍ରସନ୍ନ ହୋଇଛ । ତେଣୁ ମୁଁ ତୁମଠାରୁ କିଛି ବର ପ୍ରାର୍ଥନା କରିବି । ଦେଖ, ଯୁଦ୍ଧରେ ପୁଷ୍କଳ ମରିଯାଇଛନ୍ତି, ଶତ୍ରୁଘ୍ନ ମୂର୍ଚ୍ଛିତ ହୋଇ ପଡ଼ିଛନ୍ତି, ସୈନିକମାନେ କ୍ଷତବିକ୍ଷତ ହୋଇ ରଣଭୂମିରେ ପଡ଼ି ରହିଛନ୍ତି । ତୁମେ ତୁମର ଗଣଙ୍କ ସହିତ ଏମାନଙ୍କୁ ରକ୍ଷା କର । ମୁଁ ଓଷଧି ଆଣିବାକୁ ଦ୍ରୋଣାଚଳ ଯାଉଛି । ଯଦି ଦେବତାମାନେ ବିରୋଧ କରନ୍ତି, ତେବେ ସେଠାରେ ଯୁଦ୍ଧ କରିବାକୁ ପଡ଼ିପାରେ; ବିଳମ୍ବ ହୋଇଯାଇପାରେ, ତଥାପି ସେପର୍ଯ୍ୟନ୍ତ ବୀରମାନଙ୍କର ଯେପରି କିଛି ଅନିଷ୍ଟ ନ ହେବ, ତାହା ଦେଖିବାକୁ ହେବ ।" ଶଙ୍କର ରାଜି ହେବାରୁ ହନୁମାନ ଦ୍ରୋଣାଚଳ ଯାତ୍ରା କଲେ ।

ହନୁମାନ କ୍ଷୀରସାଗର ନିକଟକୁ ଯାଇ ଦ୍ରୋଣାଚଳକୁ ନିଜର ଲାଞ୍ଜରେ ଗୁଡ଼ାଇଦେଲେ । ସେ ପର୍ବତଟି ଉପାଡ଼ି ନେଇ ଆସିବାକୁ ବାହାରିଥିଲେ, ଏହି

ସମୟରେ ଦେବତାମାନେ ତାଙ୍କ ଉପରେ ଆକ୍ରମଣ କଲେ । କିନ୍ତୁ ହନୁମାନଙ୍କ ଆଗରେ କେହି ତିଷ୍ଠି ପାରିଲେ ନାହିଁ । ସମସ୍ତେ କ୍ଷତବିକ୍ଷତ ହୋଇ ପଳାଇଗଲେ । ସେମାନେ ଯାଇ ଇନ୍ଦ୍ରଙ୍କୁ କହିଲେ ଯେ, ଗୋଟିଏ ବାନର ଦ୍ରୋଣାଚଳକୁ ନେଇ ଚାଲିଯାଉଛି ଏବଂ ସେମାନଙ୍କର ଅସ୍ତ୍ର ତା'ଉପରେ କାମ କରୁନାହିଁ । ତାହା ଶୁଣି ଇନ୍ଦ୍ର ବ୍ୟତିବ୍ୟସ୍ତ ହୋଇ କୁଳଗୁରୁ ବୃହସ୍ପତିଙ୍କ ନିକଟକୁ ଧାଇଁଲେ । ବୃହସ୍ପତି ହନୁମାନଙ୍କର ପୂର୍ଣ୍ଣପରିଚୟ ଦେଇ ତାଙ୍କୁ ପ୍ରସନ୍ନ କରିବାକୁ ନିର୍ଦ୍ଦେଶ ଦେଲେ । ଇନ୍ଦ୍ର କହିଲେ, "ଭଗବନ୍ ! ଯଦି ହନୁମାନ ଦ୍ରୋଣାଚଳକୁ ଉପାଡ଼ି ନେଇଯିବେ, ତେବେ ଆମର ଦେବତାମାନେ ତ ମରିଯିବେ; କାରଣ ଦ୍ରୋଣାଚଳ ଆମ୍ଭମାନଙ୍କର ଜୀବନଧାରା । ଏପରି କିଛି ଉପାୟ କରାଯାଉ, ଯେପରି ହନୁମାନଙ୍କର କାମ ହେବ ଏବଂ ଆମର ଓଷଧିମାନେ ସୁରକ୍ଷିତ ରହିବେ ।"

ବୃହସ୍ପତି ଇନ୍ଦ୍ର ଓ ଦେବତାମାନଙ୍କୁ ସାଙ୍ଗରେ ନେଇ ହନୁମାନଙ୍କ ନିକଟକୁ ଚାଲିଲେ । ତାଙ୍କୁ ବହୁ କାକୁତି ମିନତି ହୋଇ ଅପରାଧ ପାଇଁ କ୍ଷମା ମାଗିଲେ ଏବଂ ତାଙ୍କର ଅଭିଳାଷ ପୂର୍ଣ୍ଣ ହେବା ନିମିତ୍ତ ବର ଦେଇ ତାଙ୍କୁ ମୃତସଂଜୀବନୀ ଓଷଧି ଦେଇଦେଲେ । ହନୁମାନ ତାହା ନେଇ ରଣଭୂମିକୁ ଫେରି ଆସିଲେ । ଚାରିଆଡ଼େ ହନୁମାନଙ୍କର ଜୟଧ୍ୱନି ହେବାକୁ ଲାଗିଲା । ସେ ଓଷଧି ନେଇ ପୁଷ୍କଳଙ୍କ ପାଖରେ ପହଞ୍ଚିଲେ । ପୁଷ୍କଳ ତ ମରି ଯାଇଥିଲେ, ତଥାପି ହନୁମାନ ଔଷଧ ପ୍ରୟୋଗ କରି କହିଲେ,* "ଯଦି ମୁଁ ମନ, ବଚନ ଓ କର୍ମରେ ଭଗବାନ ରାମଙ୍କୁ ଜାଣିଛି, ତାଙ୍କର ଆଜ୍ଞା ପାଳନ କରୁଛି ଏବଂ ମୋ ଦୃଷ୍ଟିରେ ତାଙ୍କ ଛଡ଼ା ଆଉ କିଛି ବସ୍ତୁ ନାହିଁ, ତେବେ ଏହି ଔଷଧରେ ପୁଷ୍କଳ ଜୀବିତ ହୋଇଯାଆନ୍ତୁ ।" ଏପରି କହି ସେ ମୁଣ୍ଡ ଗଣ୍ଡିରେ ଯୋଡ଼ି ଦେବାରୁ ପୁଷ୍କଳ ବଞ୍ଚି ଉଠିଲେ ଏବଂ ଶଙ୍କରଙ୍କ ସହିତ ଲଢ଼ିବା ପାଇଁ ପ୍ରସ୍ତୁତ ହୋଇଗଲେ ।

ହନୁମାନ ଶତ୍ରୁଘ୍ନଙ୍କ ପାଖକୁ ଗଲେ । ଶତ୍ରୁଘ୍ନ ମୂର୍ଚ୍ଛାରେ 'ରାମ ରାମ, ରଘୁନନ୍ଦନ-ରଘୁନନ୍ଦନ' ଆଦି କହୁଥିଲେ ଏବଂ ମଝି ମଝିରେ ଭଗବାନଙ୍କର ଲୀଳା ବିଷୟ ପ୍ରଳାପ କରୁଥିଲେ । ହନୁମାନ ତାଙ୍କ ଉପରେ ଔଷଧ ପ୍ରୟୋଗ କରି କହିଲେ, "ଯଦି ଭଗବାନଙ୍କ କୃପାରେ ମୁଁ ନିତ୍ୟ ବ୍ରହ୍ମଚାରୀ ହୋଇଥିବି ଏବଂ ମୋର ବ୍ରହ୍ମଚର୍ଯ୍ୟ କେବେ ଭଙ୍ଗ ହୋଇ ନ ଥିବ, ତେବେ ଶତ୍ରୁଘ୍ନ

---

* ଯଦ୍ୟହଂ ମନସା ବାଚ୍ୟ କର୍ମଣା ରାଘବଂ ପ୍ରତି ।
ଜାନାମି ତର୍ହି ଏତେନ ଭେଷଜେନାଶୁ ଜୀବତୁ ॥

ବର୍ତ୍ତମାନ ଜୀବିତ ହୋଇଯାଆନ୍ତୁ ।''* ଶତ୍ରୁଘ୍ନ ସଙ୍ଗେ ସଙ୍ଗେ ଉଠି ବସିଲେ, ଏବଂ 'ଶିବ କାହାନ୍ତି, ଏବେ ମୁଁ ତାଙ୍କୁ ମାରିଦେବି,' ବୋଲି କହି ଯୁଦ୍ଧଭୂମିକୁ ଦୌଡ଼ିଲେ । ପୁଣି ଘମାଘୋଟ ଯୁଦ୍ଧ ଲାଗିଗଲା । ବୀରମଣି ମୂର୍ଚ୍ଛିତ ହୋଇଗଲେ, ଶଙ୍କର ଏବଂ ଶତ୍ରୁଘ୍ନ ଲଢ଼ିବାକୁ ଲାଗିଲେ । ଯେତେବେଳେ ଶଙ୍କରଙ୍କ ବାଣରେ ଶତ୍ରୁଘ୍ନ ବ୍ୟାକୁଳ ହୋଇଗଲେ, ସେତେବେଳେ ହନୁମାନ କହିଲେ, ''ବର୍ତ୍ତମାନ ଭାଇଙ୍କୁ ସ୍ମରଣ କର, ତେବେ ଯାଇଁ କାମ ହେବ ।'' ଶତ୍ରୁଘ୍ନ ତାହା ହିଁ କଲେ ଏବଂ ଭଗବାନ ରାମ ଆସି ସେଠାରେ ଉପସ୍ଥିତ ହୋଇଗଲେ । ଶଙ୍କର ବଡ଼ ଶ୍ରଦ୍ଧା ଓ ଭକ୍ତିରେ ଭଗବାନଙ୍କୁ ସ୍ତୁତି କଲେ ଏବଂ ନିଜର ଅପରାଧ ଅମାର୍ଜନୀୟ ବୋଲି କହି କ୍ଷମାପ୍ରାର୍ଥନା କଲେ ।

ଭଗବାନ ରାମ କହିଲେ, ''ଦେବାଧିଦେବ ମହାଦେବ ! ଆପଣ ଖୁବ୍ ଭଲ କାମ କଲେ । ନିଜର ଭକ୍ତଙ୍କୁ ରକ୍ଷା କରିବା ଦେବତାମାନଙ୍କର ଧର୍ମ । ତୁମେ ମୋ ହୃଦୟରେ ଅଛ ଏବଂ ମୁଁ ତୁମ ହୃଦୟରେ ଅଛି, ଆମେ ଦୁହେଁ ଅଲଗା ନୋହୁଁ । ଯେ ଆମ୍ଭ ଦୁହିଁଙ୍କ ମଧ୍ୟରେ ପାର୍ଥକ୍ୟ ଦେଖେ, ସେ ନରକକୁ ଯାଏ । ଯେ ତୁମର ଭକ୍ତ, ସେ ମୋର ଭକ୍ତ । ମୋର ଭକ୍ତ ମଧ୍ୟ ତୁମକୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରିବା ଉଚିତ ।''ψ ଭଗବାନ ସମସ୍ତ ମରିଯାଇଥିବା ଏବଂ ଯୁଦ୍ଧରେ ଆଘାତ ପ୍ରାପ୍ତ ହୋଇଥିବା ବୀରଙ୍କୁ ସ୍ପର୍ଶ କରି ଜୀବିତ କରିଦେଲେ । ରାଜା ବୀରମଣି ନିଜର ସର୍ବସ୍ୱ ସମର୍ପିତ କରି ରାମଙ୍କର ଭକ୍ତ ହୋଇଗଲେ । ହନୁମାନ ଅଶ୍ୱ ସହିତ ଆଗକୁ ଚାଲିଲେ ।

卐 卐 卐 卐

ଯେତେବେଳେ ଭଗବାନ ସମସ୍ତ ବାନର-ଭଲ୍ଲୁକଙ୍କୁ ବିଦାୟ ଦେବାକୁ

---

* ଯଦ୍ୟହଂ ବ୍ରହ୍ମଚର୍ଯ୍ୟଂ ଚ ଜନ୍ମପର୍ଯ୍ୟନ୍ତମୁଦ୍ୟତଃ ।
ପାଳୟାମି ତଦା ବୀରଃ ଶତ୍ରୁଘ୍ନୋ ଜୀବତୁ କ୍ଷଣାତ୍ ॥

ψ ଦେବନାମୟମେବାସ୍ତି ଧର୍ମୋ ଭକ୍ତସ୍ୟ ପାଳନମ୍ ।
ତ୍ୱୟା ସାଧୁ କୃତଂ କର୍ମ ଯଦ୍ ଭକ୍ତୋ ରକ୍ଷିତୋଽଧୁନା ॥
ମମାସି ହୃଦୟେ ଶର୍ବ ଭବତୋ ହୃଦୟେ ତ୍ୱହମ୍ ।
ଆବୟୋରନ୍ତରଂ ନାସ୍ତି ମୂଢ଼ାଃ ପଶ୍ୟନ୍ତି ଦୁର୍ଧିୟଃ ॥
ଯେ ଭେଦଂ ବିଦଧତ୍ୟଦ୍ଧା ଆବୟୋରେକରୂପୟୋଃ ।
କୁମ୍ଭୀପାକେଷୁ ପଚ୍ୟନ୍ତେ ନରାଃ କଳ୍ପସହସ୍ରକମ୍ ॥
ଯେ ତ୍ୱଦ୍‌ଭକ୍ତାସ୍ତ ଏବାସନ୍ ମଦ୍‌ଭକ୍ତା ଧର୍ମସଂଯୁତାଃ ।
ମଦ୍‌ଭକ୍ତା ଅପି ଭୂୟସ୍ଯା ଭକ୍ତ୍ୟା ତବ ନତିଙ୍କରାଃ ॥

ଲାଗିଲେ ଏବଂ ହନୁମାନଙ୍କର ପାଳି ମଧ୍ୟ ଆସିଲା, ସେତେବେଳେ ସେ ଭଗବାନଙ୍କର ଚରଣ ତଳେ ପଡ଼ିଗଲେ । ସେ ପ୍ରାର୍ଥନା କଲେ, 'ଭଗବାନ୍ ! ମୁଁ ଆପଣଙ୍କ ଚରଣରେ ରହିବି ।' ଭଗବାନ ସ୍ୱୀକୃତି ଦେଇଦେଲେ । ଏପରି ଭକ୍ତଙ୍କୁ ଭଗବାନ କିପରି ବା ଛାଡ଼ିବେ ! ଭଗବାନଙ୍କର ଲୀଳା ସମ୍ବରଣର ସମୟ ଆସିଲା, ସେତେବେଳେ ଭଗବାନ ହନୁମାନଙ୍କୁ ଡକାଇ କହିଲେ, ''ହନୁମାନ ! ବର୍ତ୍ତମାନ ମୁଁ ମୋ ସ୍ୱଧାମକୁ ଚାଲିଯିବି, ତୁମେ ଆଦୌ ଦୁଃଖ କର ନାହିଁ । ଏହି ଅପ୍ରିୟ କାର୍ଯ୍ୟ ତୁମକୁ କରିବାକୁ ପଡ଼ିବ । ତୁମେ ପୃଥିବୀରେ ରହି ଶାନ୍ତି, ପ୍ରେମ ଓ ଜ୍ଞାନର ପ୍ରଚାର କର । ଯେତେବେଳେ ତୁମେ ସ୍ମରଣ କରିବ, ସେତେବେଳେ ମୁଁ ତୁମ ଆଗରେ ପ୍ରକଟ ହୋଇଯିବି । ଯେଉଁଠାରେ ମୋ ବିଷୟରେ ଚର୍ଚ୍ଚା ହେବ, ମୋର କୀର୍ତ୍ତନ ହେବ, ସେଠାରେ ତୁମେ ଉପସ୍ଥିତ ରହିବ । ମୁଁ ତୁମଠାରୁ ଅଲଗା ହେଉ ନାହିଁ; ଏହା କେବଳ ମୋର ଏକ ଲୀଳା ।'' ହନୁମାନ ହାତ ଯୋଡ଼ି କହିଲେ, 'ପ୍ରଭୋ ! ମୁଁ ରହିବି; ଯେଉଁଠାରେ ଆପଣଙ୍କ କଥା ଚର୍ଚ୍ଚା ହେବ, ସେହି ସ୍ଥାନରେ ଉପସ୍ଥିତ ରହି ଶୁଣିବି । ଏହା ମୋର ଜୀବନର ଅବଲମ୍ବନ ହେବ ।' ଭଗବାନ ଅତ୍ୟନ୍ତ ପ୍ରସନ୍ନ ହେଲେ । ଭଗବାନ ରାମ ହନୁମାନଙ୍କୁ କହିଥିଲେ, 'ହନୁମାନ ! ଏହି ଲୋକରେ ଯେପର୍ଯ୍ୟନ୍ତ ମୋର କଥା ରହିଥିବ, ସେପର୍ଯ୍ୟନ୍ତ ତୁମର କୀର୍ତ୍ତି ଓ ଜୀବନ ରହିଥିବ । ଯେପର୍ଯ୍ୟନ୍ତ ଜଗତ୍ ରହିବ ସେପର୍ଯ୍ୟନ୍ତ ମୋର କଥା ରହିବ । ତୁମେ ମୋର ଯେଉଁ ବିରାଟ ଉପକାରମାନ କରିଛ, ସେପରି ଗୋଟିଏ ଗୋଟିଏ ଉପକାରର ପ୍ରତିଦାନରେ ମୁଁ ମୋର ପ୍ରାଣ ଦେଇଦେଲେ ମଧ୍ୟ ଯଥେଷ୍ଟ ହେବ ନାହିଁ । ତୁମର ଉପକାରର ପ୍ରତିଦାନ ମୁଁ ଦେଇ ପାରିବି ନାହିଁ, ଏହା ଠିକ୍ କଥା । କିନ୍ତୁ ତୁମର ଜୀବନରେ ଏପରି ଅବସର କେବେ ଆସିବ ନାହିଁ, ଯେତେବେଳେ ପ୍ରତ୍ୟୁପକାର ଆବଶ୍ୟକ ପଡ଼ିବ; କାରଣ ମନୁଷ୍ୟ ବିପତ୍ତି ସମୟରେ ସିନା ପ୍ରତ୍ୟୁପକାରର ପାତ୍ର ହୋଇଥାଏ ।'* ଏତିକି କହି ଭଗବାନ ରାମ ଲୀଳା

* ଚରିଷ୍ୟତି କଥା ଯାବଦେଷା ଲୋକେ ଚ ମାମିକା ।
ତାବତ୍ତେ ଭବିତା କୀର୍ତ୍ତିଃ ଶରୀରେଽପ୍ୟସବସ୍ତଥା ॥
ଲୋକା ହି ଯାବତ୍ ସ୍ଥାସ୍ୟନ୍ତି ଯାବତ୍ ସ୍ଥାସ୍ୟତି ମେ କଥା ।
ଏକୈକସ୍ୟୋପକାରସ୍ୟ ପ୍ରାଣାନ୍ ଦାସ୍ୟାମି ତେ କପେ ॥
ଶେଷସ୍ୟେହୋପକାରାଣାଂ ଭବାମ ଋଣିନୋ ବୟମ୍ ।
ମଦଙ୍ଗେ ଜୀର୍ଣ୍ଣତାଂ ଯାତୁ ଯତ୍ତ୍ୱୟୋପକୃତଂ କପେ ॥
ନରଃ ପ୍ରତ୍ୟୁପକାରାଣାମାପତ୍ସ୍ୱାୟାତି ପାତ୍ରତାମ୍ ।
—ବାଲ୍ମୀକୀୟ ରାମାୟଣ

ସମ୍ବରଣ କରିନେଲେ, କିନ୍ତୁ ତାଙ୍କ ଭକ୍ତ ଭଗବାନ ଶଙ୍କରଙ୍କର ଲୀଳା ଗ୍ଭଲିଲା । ତେଣୁ କୁହାଯାଏ, 'ରାମଙ୍କ ଠାରୁ ରାମଙ୍କର ଭକ୍ତ ବଡ଼' ।



(୪)

ଭଗବାନ ରାମଙ୍କର ପରମଧାମ ଗମନ ପରେ ହନୁମାନଙ୍କର ଏକମାତ୍ର କାମ ହେଲା, ଭଗବତ୍ ନାମ, ଲୀଳା, ଗୁଣ କୀର୍ତ୍ତନ ଏବଂ ଶ୍ରବଣ । ଯେଉଁ ଯେଉଁ ସ୍ଥାନରେ ସତ୍‌ସଙ୍ଗ ହୁଏ, ହନୁମାନ ସେଠାରେ ଉପସ୍ଥିତ ରହନ୍ତି । ଆର୍ଷ୍ଟିଷେଣ ଋଷିଙ୍କ ସହିତ କିଂପୁରୁଷବର୍ଷରେ ରହି ସେ ପ୍ରାୟତଃ ଭଗବାନଙ୍କର ଗୁଣାନୁବାଦ ଶୁଣୁଥିଲେ । ଗନ୍ଧର୍ବମାନଙ୍କର ସ୍ୱର ଲହରୀ ଯେତେବେଳେ ନିଜ ରସରେ ତ୍ରିଭୁବନକୁ ଉନ୍ମତ୍ତ କରିଦେଉଥିଲା, ସେତେବେଳେ ହନୁମାନ ସେମାନଙ୍କର ଅମୃତମୟ ସଂଗୀତରୁ ନିଃସୃତ ଭଗବାନ ରାମଙ୍କର ଲୀଳାକୁ ସାକ୍ଷାତ ଅନୁଭବ କରୁଥିଲେ । ଯୁଗ ପରେ ଯୁଗ ବିତିଗଲା, କିନ୍ତୁ ଏକକ୍ଷଣ ପାଇଁ ମଧ୍ୟ ସେ ଭଗବାନଙ୍କୁ ଭୁଲିଲେ ନାହିଁ । ଭଗବାନଙ୍କ ବ୍ୟତୀତ ଅନ୍ୟ କୌଣସି କଥା ତାଙ୍କ ସମ୍ମୁଖକୁ ଆସିଲା ନାହିଁ ।

ବୈବସ୍ୱତ ମନ୍ୱନ୍ତରର ଅଠାଇଶ ଦ୍ୱାପରରେ ଭଗବାନ ଶ୍ରୀକୃଷ୍ଣଙ୍କର ଅବତାର ହେଲା । ଶ୍ରୀକୃଷ୍ଣ ଓ ରାମ ଏକ; ଭିନ୍ନ ନୁହଁନ୍ତି । ସେ ନିଜର ପରମପ୍ରିୟ ଭକ୍ତ ହନୁମାନଙ୍କୁ ଛାଡ଼ି କିପରି ରହିପାରିବେ ? ସେ ହନୁମାନଙ୍କୁ ଡକାଇବାର ସଂକଳ୍ପ କଲେ; ତା ସଙ୍ଗେ ସଙ୍ଗେ ହନୁମାନଙ୍କର ମହିମା ପ୍ରକଟ କରିବା ପାଇଁ କିଛି ଲୀଳା କରିବାର ବିଗ୍ଭର କଲେ; ଯାହା ଫଳରେ ନିଜର ଲୋକମାନଙ୍କଠାରେ ଯାହା କିଛି ଦୋଷ ଦୁର୍ଗୁଣ ଅଛି, ତାହା ଦୂର କରିହେବ । ଭଗବାନ ସଂକଳ୍ପ କରିବାରୁ, ହନୁମାନ ଦ୍ୱାରକା ନିକଟରେ ଗୋଟିଏ ଉପବନରେ ଆସି ବିରାଜମାନ ହେଲେ । ଭଗବାନଙ୍କର ନାମ ସଂକୀର୍ତ୍ତନ କରି କରି ଫଳ ଖାଇଲେ ଏବଂ ଡାଳ ଭାଙ୍ଗିଲେ ।

ଥରେ ଭଗବାନ ସତ୍ୟଭାମାଙ୍କ ପାଇଁ ପାରିଜାତ ହରଣ କରିଥିଲେ । ସତ୍ୟଭାମାଙ୍କର ଟିକିଏ ଗର୍ବ ଥିଲା ଯେ, ସେ ସବୁଠାରୁ ବେଶୀ ସୁନ୍ଦରୀ; ସେଥିପାଇଁ ଭଗବାନ ତାଙ୍କୁ ଅଧିକ ପ୍ରେମ କରନ୍ତି । ସେ କଥା କଥାରେ ଦିନେ କହି ଦେଇଥିଲେ, 'ସୀତା କଣ ମୋଠାରୁ ଅଧିକ ସୁନ୍ଦରୀ ଥିଲେ ଯେ, ତାଙ୍କ ପାଇଁ ଆପଣ ଏତେ ବଣରେ ଘୂରି ବୁଲୁଥିଲେ ?' ଭଗବାନ ଏକଥା ଶୁଣି କିଛି କହି ନ ଥିଲେ । ଚକ୍ରଙ୍କ ମନରେ ଟିକିଏ ଗର୍ବ ଥିଲା ଯେ, ସେ ଇନ୍ଦ୍ରଙ୍କ

ବଜ୍ରକୁ ପରାସ୍ତ କରି ଦେଇଥିଲେ । ଗରୁଡ଼ ମନରେ ବିଚାର କରୁଥିଲେ ଯେ, ତାଙ୍କରି ସହାୟତାରେ ଭଗବାନ ଶ୍ରୀକୃଷ୍ଣ ଇନ୍ଦ୍ରଙ୍କ ଉପରେ ବିଜୟ ପ୍ରାପ୍ତି କରିଥିଲେ । ଭଗବାନ ଶ୍ରୀକୃଷ୍ଣ ବିଚାର କଲେ, ''ଏ ତିନିଙ୍କର ଗର୍ବ ଖର୍ବ ହେବା ଉଚିତ । ଏମାନେ ମୋର ହୋଇଥିବାରୁ ଏମାନଙ୍କର ଅଭିମାନ ରହିବା ଅନୁଚିତ । ଏହା ମୁଁ ସହି ପାରିବି ନାହିଁ ।'' ଧନ୍ୟ ଭଗବାନଙ୍କର କୃପାଲୀଳା !

ଭଗବାନ ଗରୁଡ଼ଙ୍କୁ ଡକାଇ ଆଜ୍ଞା ଦେଲେ, ''ଗରୁଡ଼ ! ଦ୍ୱାରକାର ଉପବନକୁ ଗୋଟିଏ ବାନର ଆସିଛି, ତାକୁ ଧରି ନେଇଆସ । ଦେଖ, ତାକୁ ଧରିବା ପାଇଁ ଯଦି ସାହସ ଅଛି, ଏକୁଟିଆ ଯାଅ, ନଚେତ୍ ସୈନ୍ୟମାନଙ୍କୁ ସଙ୍ଗରେ ନେଇଯାଅ ।'' ଗରୁଡ଼ ମନରେ ବିଚାର କଲେ, ଗୋଟିଏ ସାଧାରଣ ବାନରକୁ ଧରି ଆଣିବା ପାଇଁ ଭଗବାନ ତାଙ୍କୁ ପଠାଉଛନ୍ତି, ଅଥଚ ସୈନ୍ୟମାନଙ୍କୁ ସଙ୍ଗରେ ନେବା ପାଇଁ କହୁଛନ୍ତି ! ଏହା ତାଙ୍କ ପକ୍ଷରେ କେତେବଡ଼ ଅପମାନର କଥା ନୁହେଁ ! ସେ ସେହି ବାନରକୁ ଚିକି ଚିକି କରିଦେବେ । ଗରୁଡ଼ ଏକୁଟିଆ ଯାଇ ଦେଖିଲେ, ହନୁମାନ ତାଙ୍କ ଆଡ଼କୁ ପିଠି କରି ଫଳ ଖାଉଛନ୍ତି ଏବଂ ଆରାମରେ 'ରାମ ରାମ' କୀର୍ତ୍ତନ କରୁଛନ୍ତି । ସେ ପ୍ରଥମେ ବହୁତ ଧମକା ଧମକି କରି ହନୁମାନଙ୍କୁ ବିରକ୍ତ କରିବା ପାଇଁ ଚେଷ୍ଟା କଲେ, କିନ୍ତୁ ସେଥିରେ ହନୁମାନ ଟିକିଏ ହେଲେ ବିଚଳିତ ହେଲେ ନାହିଁ । ଯେତେବେଳେ ଗରୁଡ଼ ତାଙ୍କ ଉପରେ ଆକ୍ରମଣ କରିବାକୁ ଚେଷ୍ଟା କଲେ, ସେତେବେଳେ ପ୍ରଥମେ ଯେପରି ଲୋକ ଛୋଟ ଛୋଟ ପକ୍ଷୀ ସହିତ ଖେଳନ୍ତି, ହନୁମାନ ଗରୁଡ଼ଙ୍କ ସଙ୍ଗେ ସେପରି ଖେଳିଲେ, କିନ୍ତୁ ଗରୁଡ଼ ନ ମାନିବାରୁ ସେ ତାଙ୍କର ଲାଞ୍ଜରେ ଗରୁଡ଼ଙ୍କୁ ଗୁଡ଼ାଇ ଟିକିଏ ଭିଡ଼ିଦେଲେ । ସେ ଛଟପଟ ହେବାକୁ ଲାଗିଲେ । ତାପରେ ଗରୁଡ଼ ଭଗବାନ ଶ୍ରୀକୃଷ୍ଣଙ୍କ ନାମ ନେଇ କହିଲେ, ''ମୁଁ ଭଗବାନଙ୍କ ଆଜ୍ଞାରେ ଆସିଛି, ଭଗବାନ ଶ୍ରୀକୃଷ୍ଣ ଆପଣଙ୍କୁ ଡକାଇଛନ୍ତି । ସେ ସାକ୍ଷାତ ନାରାୟଣ ଅଟନ୍ତି । ଚାଲନ୍ତୁ ଯିବା ।'' ହନୁମାନ ଗରୁଡ଼କୁ ଛାଡ଼ିଦେଇ କହିଲେ, ''ଭାଇ ! ଯଦିଓ ରାମ ଓ କୃଷ୍ଣଙ୍କ ମଧ୍ୟରେ କୌଣସି ଭେଦ ନାହିଁ, ଦୁହେଁ ଏକ ଓ ଅଭିନ୍ନ, ତଥାପି ମୁଁ ସୀତାପତି ରାମଙ୍କର ଭକ୍ତ । ମୋର ହୃଦୟରେ ସେ ବିରାଜମାନ । ମୁଁ ଶ୍ରୀକୃଷ୍ଣଙ୍କ ପାଖକୁ କାହିଁକି ଯିବି ?'' ହନୁମାନ ଏପରି କହି ଭଗବାନଙ୍କର ସୁପରିକଳ୍ପିତ ଲୀଳାରେ ସହଯୋଗ କଲେ ।

ତଥାପି ଗରୁଡ଼ଙ୍କର ଗର୍ବ ଭାଙ୍ଗି ନ ଥିଲା । ସେ ଚିନ୍ତା କରୁଥିଲେ, ''ମୁଁ ବନ୍ଧାହୋଇ ନ ଥିଲେ ବଳପୂର୍ବକ ହନୁମାନଙ୍କୁ ନେଇଯାଇଥାନ୍ତି ।'' ଏହା

ଭାବି ସେ ଦ୍ୱିତୀୟ ଥର ପୁଣି ଆକ୍ରମଣ କଲେ । ଅଭିମାନ ଲୋକକୁ ଅନ୍ଧ କରିଦିଏ । ଶ୍ରୀକୃଷ୍ଣଙ୍କର ଦୂତ ବୋଲି ଜାଣି ହନୁମାନ ତାଙ୍କୁ ଜୋର୍‌ରେ ଆଘାତ କଲେ ନାହିଁ; କେବଳ ହାଲୁକାଭାବରେ ଗରୁଡ଼ଙ୍କୁ ଧରି ସମୁଦ୍ର ଆଡ଼କୁ ଫିଙ୍ଗିଦେଲେ । ସମୁଦ୍ରରେ ପଡ଼ି ଗରୁଡ଼ଙ୍କର ଦିଗଭ୍ରମ ହୋଇଗଲା ଏବଂ ସେ ବହୁତ ସମୟ ପର୍ଯ୍ୟନ୍ତ ଛଟପଟ ହେବାକୁ ଲାଗିଲେ । ଯେତେବେଳେ ଭଗବାନଙ୍କୁ ସ୍ମରଣ କଲେ, ସେତେବେଳେ ଦ୍ୱାରକାର ଆଲୋକ ଦେଖାଦେଲା ଏବଂ ସେ ଶ୍ରୀକୃଷ୍ଣଙ୍କ ପାଖକୁ ଗଲେ । ଗରୁଡ଼ଙ୍କ ଠାରୁ ସବୁକଥା ଶୁଣି ଭଗବାନ ବହୁତ ହସିଲେ । ବର୍ତ୍ତମାନ ଗରୁଡ଼ଙ୍କର ଖୁବ୍ ବେଗରେ ଉଡ଼ିବାର ଗର୍ବ ବାକି ରହିଥିଲା । ସେ ଚିନ୍ତା କରୁଥିଲେ ଯେ, ଉଡ଼ିବାରେ ବାୟୁ ମଧ୍ୟ ତାଙ୍କର ସମକକ୍ଷ ହୋଇପାରିବ ନାହିଁ । ଅବଶ୍ୟ ସେ ସ୍ୱୀକାର କରିଥିଲେ ଯେ, ବଳରେ ତାଙ୍କଠାରୁ ହନୁମାନ ବଡ଼ ।

ଭଗବାନ କହିଲେ, ''ଗରୁଡ଼ ! ଏଥର ଯାଇ ହନୁମାନଙ୍କୁ କହ, 'ତୁମର ଇଷ୍ଟଦେବ ଭଗବାନ ଶ୍ରୀରାମ ଡକାଉଛନ୍ତି, ଶୀଘ୍ର ଚାଲ ।' ତାଙ୍କୁ ସଙ୍ଗରେ ନେଇ ଆସିବ । ବର୍ତ୍ତମାନ ତୁମକୁ ସେ ଆଉ କିଛି କହିବେ ନାହିଁ । ତୁମକୁ ବଡ଼ ଆଦର କରିବେ ।'' ଗରୁଡ଼ ଯିବାକୁ ଡରୁଥିଲେ; ତଥାପି ଉଡ଼ିବାର ଶକ୍ତି ଦେଖାଇବା ପାଇଁ ସେ ଗଲେ । ଭଗବାନ ସତ୍ୟଭାମାଙ୍କୁ କହିଲେ, ''ମୋର ଭକ୍ତ ହନୁମାନ ଆସୁଛନ୍ତି; ସୀତାଙ୍କ ରୂପ ଧାରଣ କରି ତୁମେ ଆସ ।'' ସୁଦର୍ଶନ ଚକ୍ରକୁ ଆଦେଶ ଦେଲେ, ''ସାବଧାନ ହୋଇ ପହରା ଦିଅ, କେହି ଯେପରି ଦ୍ୱାରକାରେ ପ୍ରବେଶ କରିପାରିବେ ନାହିଁ ।'' ସୁଦର୍ଶନ ଚକ୍ର ଅତ୍ୟନ୍ତ ସାବଧାନ ହୋଇ ପହରା ଦେବାକୁ ଲାଗିଲେ ଏବଂ ସତ୍ୟଭାମା ସଜବାଜ ହୋଇ ନିଜର ସୌନ୍ଦର୍ଯ୍ୟ ଗର୍ବରେ ଉନ୍ମତ୍ତ ହୋଇ ଆସି ବସିଲେ । ଭଗବାନ ଶ୍ରୀକୃଷ୍ଣ ଧନୁର୍ବାଣଧାରୀ ଶ୍ରୀରାମ ହୋଇଗଲେ ।

ଏଥର ହନୁମାନଙ୍କ ନିକଟକୁ ଯିବା ପାଇଁ ଗରୁଡ଼ଙ୍କର ସାହସ ହେଲା ନାହିଁ । ସେ ଦୂରରୁ ଥାଇ କହିଲେ, ''ଭଗବାନ ଶ୍ରୀରାମ ଆପଣଙ୍କୁ ଡକାଇଛନ୍ତି, ଶୀଘ୍ର ଚାଲନ୍ତୁ । ମୋ ସଙ୍ଗରେ ଯିବେ ତ ଚାଲନ୍ତୁ, ନ ହେଲେ ମୋ କାନ୍ଧ ଉପରେ ବସି ଯାଆନ୍ତୁ, ମୁଁ ନେଇଯିବି ।'' ହନୁମାନ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ, ''ମୋର ବଡ଼ ଭାଗ୍ୟ, ଭଗବାନ ମୋତେ ଡକାଇଛନ୍ତି । ତୁମେ ଚାଲ, ମୁଁ ଆସୁଛି ।'' ଗରୁଡ଼ ମନେ ମନେ ବିଚାର କଲେ, ''ଏ କଣ କହୁଛନ୍ତି ! ମୋ ପଛରେ ଗଲେ କେତେ ବିଳମ୍ବରେ ସେ ପହଞ୍ଚିବେ !'' କିନ୍ତୁ ସେ ପ୍ରଥମରୁ ଭୟ କରି ଯାଇଥିଲେ । ତେଣୁ ଆଉ କିଛି କହିବା ପାଇଁ ତାଙ୍କର ସାହସ

ହେଲା ନାହିଁ । ସେ ଚୁପ୍‌ଚାପ୍ ଚାଲିଗଲେ । ବିଚାର କଲେ, "ମୁଁ ତୀବ୍ର ଗତିରେ ଯାଇ ଭଗବାନଙ୍କ ପାଖରେ ଶୀଘ୍ର ପହଞ୍ଚିଯିବି ।" କିନ୍ତୁ ହନୁମାନ ଗରୁଡ଼ ପହଞ୍ଚିବାର ବହୁତ ପୂର୍ବରୁ ଦ୍ୱାରକାରେ ପହଞ୍ଚି ଯାଇଥିଲେ । ହନୁମାନଙ୍କ ଦୃଷ୍ଟିରେ ଏହା ଦ୍ୱାରକା ନ ଥିଲା, ଅଯୋଧ୍ୟା ଥିଲା । ସିଂହଦ୍ୱାରରେ ସୁଦର୍ଶନ ଚକ୍ର କହିଲେ, "ଭଗବାନଙ୍କର ଆଦେଶ, ମୁଁ ତୁମକୁ ଭିତରକୁ ଯିବାକୁ ଦେବି ନାହିଁ ।" ହନୁମାନ କହିଲେ, "ତୁମେ ଭଗବାନଙ୍କ ଦର୍ଶନରେ ବିଘ୍ନ ଘଟାଉଛ," ଏହା କହି ସେ ଚକ୍ରକୁ ଧରି ପାଟିରେ ଜାକି ଦେଲେ । ତାପରେ ଭଗବାନଙ୍କ ମହଲକୁ ଯାଇ ଦେଖିଲେ, ଭଗବାନ ଶ୍ରୀରାମ ସିଂହାସନ ଉପରେ ବିରାଜମାନ ଅଛନ୍ତି । ତାଙ୍କୁ ମା' ସୀତାଙ୍କର ଦର୍ଶନ ହୋଇ ନ ଥିଲା । ହନୁମାନ ଭଗବାନଙ୍କ ଚରଣରେ ସାଷ୍ଟାଙ୍ଗ ପ୍ରଣାମ କରି ପଚାରିଲେ, "ମହାରାଜ ! ଆଜି ମା' ସୀତା କାହାନ୍ତି ? ତାଙ୍କ ସ୍ଥାନରେ ଏ କିଏ ବସିଛନ୍ତି ? ଆପଣ କୌଣସି ଦାସୀକୁ ଏତେ ଆଦର କରି ପାଖରେ ରଖିଛନ୍ତି କି ?" ସତ୍ୟଭାମା ଲଜ୍ଜିତା ହୋଇଗଲେ । ତାଙ୍କର ସୌନ୍ଦର୍ଯ୍ୟଗର୍ବ ନଷ୍ଟ ହୋଇଗଲା । ଭଗବାନ ପଚାରିଲେ, "ହନୁମାନ ! ତୁମକୁ କେହି ଅଟକାଇଲେ ନାହିଁ ? ତୁମେ ଏଠାକୁ କିପରି ଆସିଗଲ ?" ହନୁମାନ ପାଟିରୁ ଚକ୍ର ବାହାର କରି ଆଗରେ ରଖିଦେଲେ । ଚକ୍ର ଶ୍ରୀହୀନ ହୋଇ ଯାଇଥିଲା । ଏତିକିବେଳେ ତୀବ୍ର ଗତିରେ ଗରୁଡ଼ ଆସି ଦେଖିଲେ ଯେ, ହନୁମାନ ବହୁତ ଆଗରୁ ଆସି ପହଞ୍ଚି ସାରିଛନ୍ତି । ତାଙ୍କର ମୁଣ୍ଡ ତଳକୁ ନଇଁଗଲା । ଏହି ପ୍ରକାର ହନୁମାନଙ୍କୁ ନିମିତ୍ତ କରି ଭଗବାନ ତିନିଜଣଙ୍କର ଗର୍ବ ଖର୍ବ କରି ଦେଇଥିଲେ ଏବଂ ଦ୍ୱାରକାର ପୂର୍ବଦ୍ୱାର ରକ୍ଷା ନିମିତ୍ତ ହନୁମାନଙ୍କୁ ନିଯୁକ୍ତ କରିଥିଲେ ।

卐 卐 卐 卐

ପାଣ୍ଡବମାନେ କାମ୍ୟକ ବନରେ ଥିବା ସମୟରେ ଦିନେ ପବନରେ ଉଡ଼ି ଦ୍ରୌପଦୀଙ୍କ ଆଗରେ ଗୋଟିଏ ସୁନ୍ଦର ସୁଗନ୍ଧ ଫୁଲ ଆସି ପଡ଼ିଗଲା । ଦ୍ରୌପଦୀ ଭୀମଙ୍କୁ ଠିକ୍ ସେହିପରି ଆଉ ଗୋଟିଏ ଫୁଲ ଆଣିବା ପାଇଁ ଅନୁରୋଧ କଲେ । ଯେଉଁ ଦିଗରୁ ଫୁଲଟି ଉଡ଼ି ଆସିଥିଲା, ସେହି ଦିଗକୁ ଭୀମ ଚାଲିଲେ । ଭୀମଙ୍କର ବଳର ଗର୍ବ ଥିଲା ଏବଂ କିଛି କରିବା ସମୟରେ ସେ କିଛି ବିଚାର କରୁ ନ ଥିଲେ, ଚିନ୍ତା ମଧ୍ୟ କରୁ ନ ଥିଲେ । ହନୁମାନ ଚିନ୍ତା କଲେ, "ଭୀମ ମୋର ଭାଇ । ଏହାର ମନରେ ଗର୍ବ ହେବା ଉଚିତ ନୁହେଁ । ଏ ଯେଉଁ ଦିଗକୁ ଆଗେଇଚାଲିଛି, ସେ ଦିଗରେ ବିପଦ ଅଛି ।" ଏପରି ଭାବି ହନୁମାନ ଯାଇ ଭୀମଙ୍କ ରାସ୍ତାରେ ଶୋଇପଡ଼ି ତାଙ୍କର

ଲାଙ୍ଗୁଳ ଲମ୍ବାଇ ଦେଲେ । ଭୀମ ହନୁମାନଙ୍କୁ ଚିହ୍ନି ନ ଥିଲେ । ସେ କହିଲେ, ‘‘ବାନର ! ନିଜର ଲାଞ୍ଜ ଘୁଞ୍ଚାଇ ନିଅ, ନ ହେଲେ ଛିଣ୍ଡାଇ ଦେବି ।’’ ହନୁମାନ ନିଜକୁ ପୀଡ଼ିତ ବୋଲି ଦେଖାଇ ହୋଇ କହିଲେ, ‘‘ଭାଇ ! ମୋର ଲାଞ୍ଜ ବହୁତ ଲମ୍ବା, ତୁମେ ବର୍ତ୍ତମାନ ଯୁବକ ଓ ବଳବାନ, ମୋ ଲାଞ୍ଜକୁ ଡେଇଁ ଚାଲିଯାଅ, ନ ହେଲେ ସେପଟକୁ ଟିକିଏ ଘୁଞ୍ଚାଇ ଦିଅ’’ । ଭୀମ କହିଲେ, ‘‘ତୁମର ଲାଞ୍ଜ ଯେତେ ବଡ଼ ହେଉ ନା କାହିଁକି, ମୋର ବଡ଼ଭାଇ ଯେପରି ସମୁଦ୍ର ଲଂଘନ କରିଥିଲେ, ମୁଁ ସେପରି ଲଂଘନ କରି ଚାଲିଯାନ୍ତି କିନ୍ତୁ ସମସ୍ତଙ୍କ ଶରୀରରେ ଭଗବାନ ଅଛନ୍ତି, ତେଣୁ କାହାରିକୁ ଡେଇଁ କରି ଯିବା ଉଚିତ ନୁହେଁ । ମୁଁ ତୁମର ଲାଞ୍ଜ ଘୁଞ୍ଚାଇ ଦେଉଛି ।’’ ଲାଞ୍ଜ ଘୁଞ୍ଚାଇବାକୁ ପ୍ରଥମେ ସେ ଗୋଟିଏ ହାତ ଲଗାଇଲେ, କିନ୍ତୁ ଲାଞ୍ଜ ହଲିଲା ନାହିଁ, ତେଣୁ ଦୁଇହାତ ଲଗାଇଲେ; ତଥାପି ଲାଞ୍ଜ ଯେପରିକୁ ସେପରି ଅଟଳ ରହିଲା । ଭୀମ ଝାଳନାଳ ହୋଇଗଲେ । ସେ ଥକିଗଲେ କିନ୍ତୁ ଲାଞ୍ଜ ହଟାଇପାରିଲେ ନାହିଁ । ବର୍ତ୍ତମାନ ଭୀମଙ୍କର ବୁଦ୍ଧି ଆସିଗଲା । ଅଭିମାନ ଚାଲିଯିବାରୁ ସେ ହନୁମାନଙ୍କୁ ଚିହ୍ନି ପାରିଲେ । ସେ ନିଜର କୃତ୍ୟ ପାଇଁ ଅନୁତାପ କଲେ, କ୍ଷମା ମାଗିଲେ ଏବଂ ହନୁମାନ ତାଙ୍କୁ ଅତି ପ୍ରେମରେ ଗଳାରେ ଲଗାଇ ଭଗବାନ ରାମଙ୍କର କଥା ଶୁଣାଇଲେ । ଭୀମସେନ ବହୁ ପ୍ରାର୍ଥନା କରିବାରୁ ହନୁମାନ ନିଜର ସେହି ଭୀଷଣରୂପ ଦେଖାଇଲେ, ଯେଉଁ ରୂପ ଧରି ସେ ସମୁଦ୍ର ଲଂଘନ କରିଥିଲେ । ସେହି ରୂପ ଛାଡ଼ି ସେ ପୁଣି ଛୋଟ ରୂପ ହୋଇଗଲେ ଏବଂ ଭୀମଙ୍କୁ ଅନେକ ପ୍ରକାର ଉପଦେଶ ଦେଲେ । ସେ କହିଲେ—‘‘କେବେ ଅଭିମାନ କରିବ ନାହିଁ, ମୋ ସଙ୍ଗରେ ସାକ୍ଷାତ ହେବା କଥା କାହାରିକୁ କହିବ ନାହିଁ ଏବଂ କୌଣସି ବିପତ୍ତି ପଡ଼ିଲେ ମୋତେ ସ୍ମରଣ କରିବ । କହିବ ତ, ମୁଁ ବର୍ତ୍ତମାନ ହସ୍ତିନାପୁର ଯାଇ ସମସ୍ତ ନଗର ନଷ୍ଟ କରିଦେବି ଏବଂ ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କୁ ମାରିଦେବି । ଦୁର୍ଯ୍ୟୋଧନକୁ ବାନ୍ଧି ନେଇଆସିବି । ଯାହା କିଛି କହିବ, ମୁଁ କରିବା ପାଇଁ ପ୍ରସ୍ତୁତ ଅଛି ।’’ ଭୀମସେନ କହିଲେ, ‘‘ଆପଣଙ୍କର ସହାୟତା ପାଇଁ ଆମେ ଧନ୍ୟ ହୋଇଗଲୁ, ଆପଣଙ୍କ ସହାୟତାରେ ଆମେ ଶତ୍ରୁମାନଙ୍କୁ ଜୟ କରିବୁ ।’’ ହନୁମାନ କହିଲେ—‘‘ଭୀମ ! ଯେତେବେଳେ ତୁମେ ଶତ୍ରୁସେନାଙ୍କ ମଧ୍ୟରେ ପଶି ସିଂହନାଦ କରିବ, ସେତେବେଳେ ଅର୍ଜୁନଙ୍କ ଧ୍ୱଜା ଉପରେ ରହି ମୁଁ ଏପରି ଶବ୍ଦ କରିବି, ଯାହା ଶୁଣି ତୁମର ଶତ୍ରୁମାନେ ମୃତପ୍ରାୟ ହୋଇଯିବେ ।’’ ହନୁମାନ ଭୀମଙ୍କୁ ଆଲିଙ୍ଗନ କଲେ

ଏବଂ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ତାହାଙ୍କ ନିର୍ଦ୍ଦେଶିତ ମାର୍ଗରେ ଯାଇ ଭୀମ ଦ୍ରୌପଦୀଙ୍କର ଅଭିଳଷିତ ସୁନ୍ଦର ସୁଗନ୍ଧଯୁକ୍ତ ଫୁଲ ପାଇଥିଲେ ।

卐 卐 卐 卐

ହନୁମାନଙ୍କ ଜୀବନରେ କେବେହେଲେ ଅଭିମାନ ଦେଖାଯାଇ ନ ଥିଲା; ତେଣୁ ଭଗବାନ ନିଜର ଭକ୍ତମାନଙ୍କର ଅଭିମାନକୁ ନଷ୍ଟ କରିବା ପାଇଁ ପ୍ରାୟ ହନୁମାନଙ୍କୁ ନେଉଥିଲେ । କଥିତ ଅଛି ଯେ, ଥରେ ଅର୍ଜୁନଙ୍କର ମନରେ ଧନୁର୍ବିଦ୍ୟାର ଅଭିମାନ ହୋଇ ଯାଇଥିଲା । ସେ ନିଜେ କଥାରେ କଥାରେ ଭଗବାନ ଶ୍ରୀକୃଷ୍ଣଙ୍କୁ କହିଲେ, "ଆପଣ ରାମାବତାରରେ ସମୁଦ୍ରରେ ସେତୁବଂଧ ବାନ୍ଧିବା ପାଇଁ ଏତେ ଆୟୋଜନ କାହିଁକି କରିଥିଲେ ? ଶର ମାରି ସେତୁବଂଧ ବାନ୍ଧି ହୋଇ ପାରିଥାନ୍ତା । ବିଚରା ବାନରମାନଙ୍କୁ ଅଯଥାରେ ଏତେ କଷ୍ଟ ଦେଲେ ।" ଭଗବାନ ହସିବାକୁ ଲାଗିଲେ । ଭଗବାନଙ୍କର ହସ ତ ଲୋକମାନଙ୍କୁ ମୋହିତ କରୁଥିବା ମାୟା !

ଭଗବାନ କହିଲେ, "ଆଚ୍ଛା, ତୁମେ ଶର ମାରି ସମୁଦ୍ରର ଗୋଟିଏ ଛୋଟିଆ ଅଂଶରେ ଗୋଟିଏ ସେତୁ ନିର୍ମାଣ କରିଦିଅ ତ ।" ଅର୍ଜୁନ ସଙ୍ଗେ ସଙ୍ଗେ ନିଜର ଅଦ୍ଭୁତ ଧନୁର୍ବିଦ୍ୟା ବଳରେ ଗୋଟିଏ ସେତୁ ତିଆରି କରିଦେଲେ ।

ଭଗବାନ ହନୁମାନଙ୍କୁ ସ୍ମରଣ କଲେ; ସେ ଶୀଘ୍ର ଆସି ପହଞ୍ଚିଗଲେ । ଭଗବାନଙ୍କ ଆଜ୍ଞାରେ ସେ ବାଣର ସେତୁ ଉପରେ ଚଢ଼ିଗଲେ । ସେ ଚଢ଼ିବାମାତ୍ରେ ସେତୁ ମଡ଼ ମଡ଼ ଶବ୍ଦ କରି ଭାଙ୍ଗିଯିବାକୁ ଲାଗିଲା । ସେ ତା ଉପରୁ ଓହ୍ଲାଇ ଆସିଲେ । ଅର୍ଜୁନ ଦେଖିଲେ, ଭଗବାନଙ୍କ ପିଠିରେ ରକ୍ତର ଚିହ୍ନ । ପଚ୍ଚରିବାରୁ, ପ୍ରଭୁ କହିଲେ ଯେ, ସେ ପିଠି ଦ୍ୱାରା ସେତୁକୁ ଧାରଣ କରି ନ ଥିଲେ, ତାହା ହନୁମାନଙ୍କ ସହ ରସାତଳଗାମୀ ହୋଇଯାଇଥାନ୍ତା ଏବଂ ଅର୍ଜୁନ ଉପହାସର ପାତ୍ର ହୋଇଥାନ୍ତେ । ଭଗବାନ କହିଲେ, "ଏପରି ଅନେକ ବାନର ଥିଲେ; ସେମାନେ ବାଣ ଦ୍ୱାରା ତିଆରି ସେତୁରେ କିପରି ଯାଇ ପାରିଥାଆନ୍ତେ ?" ଅର୍ଜୁନ ବର୍ତ୍ତମାନ ସବୁକଥା ବୁଝିଗଲେ । ତାଙ୍କର ଗର୍ବ ଭଙ୍ଗ ହେଲା ।

ଅର୍ଜୁନ ଭଗବାନଙ୍କ ଆଜ୍ଞାରେ ହନୁମାନଙ୍କର ଆରାଧନା କଲେ । ତାଙ୍କର ମନ୍ତ୍ରର ପୁରଶ୍ଚରଣ କଲେ ।* ହନୁମାନ ବର ଦେଲେ, "ମୁଁ ସର୍ବଦା

* ସେହି ମନ୍ତ୍ର ହେଲା—'ହନୁମତେ ରୁଦ୍ରାତ୍ମକାୟ ହୁଂ ଫଟ୍'—ନଦୀ ତଟରେ, ବିଷ୍ଣୁ ମନ୍ଦିରରେ ବା ନିର୍ଜନ ସ୍ଥାନରେ ଅଥବା କୌଣସି ପର୍ବତ ଉପରେ ଏକାଗ୍ର ଚିତ୍ତରେ

ତୁମର ସହାୟତା କରିବି ଏବଂ ଭବିଷ୍ୟତ ଯୁଦ୍ଧରେ ମୁଁ ତୁମର ରଥ ଉପରେ ବସି ତୁମର ରକ୍ଷା କରିବି ।'' କଥିତ ଅଛି, ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କ ବାଣ ଦ୍ୱାରା ସମସ୍ତଙ୍କର ରଥ ବହୁତ ଦୂରକୁ ଘୁଞ୍ଚି ଯାଉଥିଲା, କିନ୍ତୁ କାହାରି ବାଣରେ ତାଙ୍କର ରଥ ପଛକୁ ଘୁଞ୍ଚୁ ନ ଥିଲା । ଥରେ କର୍ଣ୍ଣଙ୍କର ବାଣରେ ଅର୍ଜୁନଙ୍କର ରଥ ଟିକିଏ ପଛକୁ ଘୁଞ୍ଚିଗଲା; ଏଥିରେ ଭଗବାନ ଶ୍ରୀକୃଷ୍ଣ କର୍ଣ୍ଣଙ୍କୁ ଯୁଦ୍ଧଭୂମିରେ ଭୂରି ଭୂରି ପ୍ରଶଂସା କଲେ । ଅର୍ଜୁନ କହିଲେ, ''ଭଗବାନ ! ମୋ ବାଣରେ କର୍ଣ୍ଣଙ୍କର ରଥ ବହୁତ ପଛକୁ ଘୁଞ୍ଚି ଯାଉଥିଲା ଏବଂ ତାଙ୍କର ବାଣରେ ମୋର ରଥ ଟିକିଏ ପଛକୁ ଘୁଞ୍ଚିଗଲା । ଏଥିରେ ତାଙ୍କୁ ପ୍ରଶଂସା କରିବାର କାରଣ କଣ ?'' ଭଗବାନ କହିଲେ, ''ଅର୍ଜୁନ ! ତୁମର ରଥ ଉପରେ ହନୁମାନ ବସିଛନ୍ତି, ନ ହେଲେ ଏତେବେଳକୁ ତୁମର ରଥ ଭସ୍ମ ହୋଇ ସାରନ୍ତାଣି । ସେ ରଥ ଉପରେ ବସି ଥାଉଁ ଥାଉଁ ରଥ ଯେ ପଛକୁ ଘୁଞ୍ଚିଗଲା, ତାହା କର୍ଣ୍ଣଙ୍କର ବୀରତ୍ୱର ସୂଚକ ।'' ଅର୍ଜୁନଙ୍କର ଶଙ୍କାର ସମାଧାନ ହୋଇଗଲା । ମହାଯୁଦ୍ଧ ଶେଷରେ ଯେତେବେଳେ ହନୁମାନ ଅର୍ଜୁନଙ୍କ ରଥ ଉପରୁ ତଳକୁ ଡେଇଁ ପଡ଼ିଲେ, ସେତେବେଳେ ତାଙ୍କର ରଥ ଜଳି ଭସ୍ମ ହୋଇଗଲା । ହନୁମାନଙ୍କ ପ୍ରତାପରେ ଅର୍ଜୁନ ଅସାଧାରଣ ବୀରତ୍ୱର ସହ ଯୁଦ୍ଧ କରିପାରିଥିଲେ ।

卐 卐 卐 卐

ଭଗବାନ ଶ୍ରୀକୃଷ୍ଣଙ୍କର ପୁତ୍ର ପ୍ରଦ୍ୟୁମ୍ନ ଦିଗ୍‌ବିଜୟରେ ବାହାରିଥିଲେ । ଦ୍ୱାରକାରେ ଅଶ୍ୱମେଧ ଯଜ୍ଞ ହେବାର ଥିଲା ଏବଂ ତାହା ପ୍ରାରମ୍ଭ ହେବାକୁ ଯାଉଥିଲା । ସେ ବହୁ ଦେଶ ଭ୍ରମଣ କରି ହିରଣ୍ମୟଖଣ୍ଡରେ ପହଞ୍ଚିଲେ । ତାଙ୍କ ସଙ୍ଗରେ ଅର୍ଜୁନ ଥିଲେ । ରଥର ଧ୍ୱଜାରେ ହନୁମାନ ବିରାଜମାନ ଥିଲେ ।

---

ହନୁମାନଙ୍କର ଧ୍ୟାନ କରି ଏକ ଲକ୍ଷ ମନ୍ତ୍ର ଜପ କରିବା ଉଚିତ । ଧ୍ୟାନ ହେଲା—

ମହାଶୈଳଂ ସମୁତ୍ପାଟ୍ୟ ଧାବନ୍ତଂ ରାବଣଂ ପ୍ରତି । ତିଷ୍ଠ ତିଷ୍ଠ ରଣେ ଦୁଷ୍ଟ ଘୋରରାବଂ ସମୁତ୍ସୃଜନ ॥
ଲାକ୍ଷାରସାରୁଣଂ ରୌଦ୍ରଂ କାଳାନ୍ତକଯମୋପମମ୍ । ଜ୍ୱଳଦଗ୍ନିଲସନ୍ନେତ୍ରଂ ସୂର୍ଯ୍ୟକୋଟିସମପ୍ରଭମ୍ ॥
ଅଙ୍ଗଦାଦ୍ୟୈର୍ମହାବୀରୈର୍ବେଷ୍ଟିତଂ ରୁଦ୍ରରୂପିଣମ୍ । ଏବଂ ରୂପଂ ହନୂମନ୍ତଂ ଧ୍ୟାତ୍ୱା ଯଃ ପ୍ରଜପେନ୍ମନୁମ୍ ॥

ଅର୍ଥାତ୍—ହନୁମାନ ଗୋଟିଏ ପର୍ବତକୁ ଉପାଡ଼ି ରାବଣ ଆଡ଼କୁ ଦୌଡ଼ୁଛନ୍ତି ଏବଂ ଭୀଷଣ ହୁଂକାର କରି ରାବଣକୁ ଡାକି ଡାକି କହୁଛନ୍ତି—ରେ ଦୁଷ୍ଟ ! ରହିଯାଅ, ରହିଯାଅ । ତାଙ୍କର ଶରୀର ଲାଲବର୍ଣ୍ଣ ଏବଂ ସେ କାଳାନ୍ତକ ଯମ ସଦୃଶ ଥିଲେ । ତାଙ୍କର ଦୁଇନେତ୍ର ଅଗ୍ନିପରି ଜାଜ୍ୱଲ୍ୟମାନ ଥିଲା, କୋଟି କୋଟି ସୂର୍ଯ୍ୟଙ୍କ ପରି ତାଙ୍କର ତେଜ ଥିଲା, ସେହି ରୁଦ୍ରରୂପୀ ହନୁମାନ ଅଙ୍ଗଦାଦି ମହାନ୍ ବୀରମାନଙ୍କର ଗହଣରେ ରହିଥିଲେ ।

ହିରଣ୍ମୟଖଣ୍ଡରେ ନଳ-ନୀଳଙ୍କ ବଂଶଜଙ୍କ ସହିତ ପ୍ରଦ୍ୟୁମ୍ନଙ୍କର ବଡ଼ ଭୟଙ୍କର ଯୁଦ୍ଧ ହେଲା । ଅର୍ଜୁନ ମଧ୍ୟ ଲଢୁଥିଲେ । ସେଠାକାର ବୀର ବାନରମାନେ ଅର୍ଜୁନ ଏବଂ ପ୍ରଦ୍ୟୁମ୍ନଙ୍କର ରଥକୁ ପୁଚ୍ଛରେ ବାନ୍ଧି ଭୂମି ଉପରେ ପକାଇଦେଲେ । ବଡ଼ ଭୟଙ୍କର ସଂଗ୍ରାମ ହେଲା । ଶେଷରେ ହନୁମାନ ଧ୍ୱଜା ଉପରୁ ଡେଇଁ ପଡ଼ିଲେ ଏବଂ ସମସ୍ତ ବୀରମାନଙ୍କୁ ଲାଂଜରେ ବାନ୍ଧି ପକାଇଲେ । ଯେତେବେଳେ ସେମାନେ ହନୁମାନଙ୍କୁ ଚିହ୍ନିଗଲେ, ସେତେବେଳେ ସେଠାକାର ସମସ୍ତ ଅଧିବାସୀ ବଡ଼ ଶ୍ରଦ୍ଧା ଓ ଭକ୍ତିର ସହିତ ହନୁମାନ, ଅର୍ଜୁନ ଓ ପ୍ରଦ୍ୟୁମ୍ନଙ୍କୁ ପୂଜା କଲେ; ଅନେକ ପ୍ରକାର ପଦାର୍ଥ ଭେଟି ଦେଲେ । ସେଠାରୁ ସେମାନେ ଆଗକୁ ଗଲେ ।

ହନୁମାନ କେତେବଡ଼ ତତ୍ତ୍ୱଜ୍ଞାତା ଥିଲେ, ତାହାର ସୂଚନା ରାମରହସ୍ୟ ଉପନିଷଦ୍‌ରୁ ମିଳେ । ସନକ, ସନନ୍ଦନ, ସନତ୍‌କୁମାର ତଥା ସନାତନ ନାମକ ଚାରି ଭାଇ ତାଙ୍କଠାରୁ ରାମମନ୍ତ୍ର ରହସ୍ୟ ପ୍ରାପ୍ତ କରିଥିଲେ । ବଡ଼ ବଡ଼ ଋଷିମାନେ ଓ ପ୍ରହ୍ଲାଦ ତାଙ୍କର ଶିଷ୍ୟ ଥିଲେ । ମୁକ୍ତିକୋପନିଷଦ୍‌ରେ ବର୍ଣ୍ଣନା ଅଛି ଯେ, ସ୍ୱୟଂ ଭଗବାନ ରାମ ତାଙ୍କୁ ଉପନିଷଦ୍ ତତ୍ତ୍ୱ ଶିକ୍ଷା ଦେଇଥିଲେ । ଏହା ଛଡ଼ା ବିଭିନ୍ନ ପୁରାଣରେ ମାରୁତିଙ୍କର ଚରିତ୍ର ବିସ୍ତାରିତଭାବରେ ବର୍ଣ୍ଣନା କରାଯାଇଛି । ଏଠାରେ ତାଙ୍କର ଜୀବନର କେତୋଟି ସଂକ୍ଷିପ୍ତ ଘଟଣାମାତ୍ର ଉଦ୍ଧାର କରାଗଲା ।

ଭଗବାନ ମାରୁତି ଆଜି ମଧ୍ୟ ଆମ ମଧ୍ୟରେ ଅଛନ୍ତି । ସେ କେଉଁଆଡ଼େ ଯାଇ ନାହାନ୍ତି । କେବଳ ଆମେ ତାଙ୍କୁ ଚିହ୍ନି ପାରୁନାହୁଁ । ଏହାର କାରଣ ହେଉଛି, ଆମର ଅଭକ୍ତି ଓ ଅଶ୍ରଦ୍ଧା । ତୁଳସୀଦାସ ଆଦି ମହାତ୍ମାମାନେ ଏହି ଯୁଗରେ ଭଗବାନ ମାରୁତିଙ୍କର ସାକ୍ଷାତ୍‌କାର ଲାଭ କରିଥିଲେ । ବର୍ତ୍ତମାନ ଏପରି ମଧ୍ୟ ସାଧକ ଅଛନ୍ତି, ଯେଉଁମାନେ ଭଗବାନ ମାରୁତିଙ୍କର ଦର୍ଶନ ଲାଭ କରୁଛନ୍ତି । ତାଙ୍କୁ ପାଇବା ପାଇଁ ଶାସ୍ତ୍ରରେ ଅନେକ ମନ୍ତ୍ର ଏବଂ ଅନୁଷ୍ଠାନ ରହିଛି । ଶ୍ରଦ୍ଧାପୂର୍ବକ ଅନୁଷ୍ଠାନ କଲେ, ମାରୁତିଙ୍କର ଦର୍ଶନ ନିଶ୍ଚିତ ହୋଇ ପାରିବ । ତାଙ୍କର ସ୍ମରଣରେ ଅନ୍ତଃକରଣ ଶୁଦ୍ଧ ହୋଇଯାଏ ଏବଂ ତାହାଙ୍କ କୃପାରେ ଭଗବତ୍ ପ୍ରାପ୍ତି ନିଶ୍ଚିତ ହୋଇ ପାରିବ ।

**ଭଗବାନ ଶ୍ରୀ ମାରୁତିଙ୍କର ଜୟ ।**



॥ ଶ୍ରୀହନୁମତେ ନମଃ ॥

# ଶ୍ରୀହନୁମାନଚାଳିଶା

(ଦୋହା)

ଶ୍ରୀଗୁରୁ ଚରନ ସରୋଜ ରଜ
ନିଜ ମନୁ ମୁକୁରୁ ସୁଧାରି ।
ବରନଉଁ ରଘୁବର ବିମଲ ଜସୁ
ଜୋ ଦାୟକୁ ଫଲ ଚାରି ॥
ବୁଦ୍ଧିହୀନ ତନୁ ଜାନିକେ,
ସୁମିରୌଁ ପୱନ-କୁମାର ।
ବଲ ବୁଧି ବିଦ୍ୟା ଦେହୁ ମୋହିଁ,
ହରହୁ କଲେସ ବିକାର ॥

(ଚୌପାଈ)

ଜୟ ହନୁମାନ ଜ୍ଞାନ ଗୁନସାଗର । ଜୟ କପୀସ ତିହୁଁ ଲୋକ ଉଜାଗର ॥
ରାମ ଦୂତ ଅତୁଲିତ ବଲ ଧାମା । ଅଞ୍ଜନି-ପୁତ୍ର ପୱନସୁତ ନାମା ॥
ମହାବୀର ବିକ୍ରମ ବଜରଂଗୀ । କୁମତି ନିୱାର ସୁମତି କେ ସଂଗୀ ॥
କଂଚନ ବରନ ବିରାଜ ସୁବେସା । କାନନ କୁଂଡଲ କୁଂଚିତ କେସା ॥
ହାଥ ବଜ୍ର ଔ ଧ୍ୱଜା ବିରାଜୈ । କାଁଧେ ମୂଁଜ ଜନେଉ ସାଜୈ ॥
ସଂକର ସୁୱନ କେସରୀନଂଦନ । ତେଜ ପ୍ରତାପ ମହା ଜଗ ବଂଦନ ॥
ବିଦ୍ୟାୱାନ ଗୁନୀ ଅତି ଚାତୁର । ରାମ କାଜ କରିବେ କୋ ଆତୁର ॥
ପ୍ରଭୁ ଚରିତ୍ର ସୁନିବେ କୋ ରସିୟା । ରାମ ଲଷନ ସୀତା ମନ ବସିୟା ॥
ସୂକ୍ଷ୍ମ ରୂପ ଧରି ସିୟହିଁ ଦିଖାୱା । ବିକଟ ରୂପ ଧରି ଲଂକ ଜରାୱା ॥
ଭୀମ ରୂପ ଧରି ଅସୁର ସଁହାରେ । ରାମଚନ୍ଦ୍ର କେ କାଜ ସଁୱାରେ ॥
ଲାୟ ସଜୀୱନ ଲଖନ ଜିୟାୟେ । ଶ୍ରୀରଘୁବୀର ହରଷି ଉର ଲାୟେ ॥
ରଘୁପତି କୀନ୍ହୀ ବହୁତ ବଡ଼ାଈ । ତୁମ ମମ ପ୍ରିୟ ଭରତହି ସମ ଭାଈ ॥
ସହସ ବଦନ ତୁମ୍ହରୋ ଜସ ଗାୱୈଁ । ଅସ କହି ଶ୍ରୀପତି କଣ୍ଠ ଲଗାୱୈଁ ॥
ସନକାଦିକ ବ୍ରହ୍ମାଦି ମୁନୀସା । ନାରଦ ସାରଦ ସହିତ ଅହୀସା ॥
ଜମ କୁବେର ଦିଗପାଲ ଜହାଁ ତେ । କବି କୋବିଦ କହି ସକେ କହାଁ ତେ ॥
ତୁମ ଉପକାର ସୁଗ୍ରୀୱହିଁ କୀନ୍ହା । ରାମ ମିଲାୟ ରାଜ ପଦ ଦୀନ୍ହା ॥

ତୁମ୍ହରୋ ମନ୍ତ୍ର ବିଭୀଷନମାନା । ଲଂକେଶ୍ୱର ଭଏ ସବ ଜଗ ଜାନା ॥
ଜୁଗ ସହସ୍ର ଜୋଜନ ପର ଭାନୂ । ଲୀଲ୍ୟୋ ତାହି ମଧୁର ଫଲ ଜାନୂ ॥
ପ୍ରଭୁ ମୁଦ୍ରିକା ମେଲି ମୁଖ ମାହୀଁ । ଜଲଧି ଲାଁଘି ଗୟେ ଅଚରଜ ନାହୀଁ ॥
ଦୁର୍ଗମ କାଜ ଜଗତ କେ ଜେତେ । ସୁଗମ ଅନୁଗ୍ରହ ତୁମ୍ହରେ ତେତେ ॥
ରାମ ଦୁଆରେ ତୁମ ରଖୱାରେ । ହୋତ ନ ଆଜ୍ଞା ବିନୁ ପୈସାରେ ॥
ସବ ସୁଖ ଲହୈ ତୁମ୍ହାରୀ ସରନା । ତୁମ ରଚ୍ଛକ କାହୂ କୋ ଡର ନା ॥
ଆପନ ତେଜ ସମ୍ହାରୋ ଆପୈ । ତୀନୋଁ ଲୋକ ହାଁକ ତେଁ କାଁପୈ ॥
ଭୂତ ପିସାଚ ନିକଟ ନହିଁ ଆୱୈ । ମହାବୀର ଜବ ନାମ ସୁନାୱୈ ॥
ନାସୈ ରୋଗ ହରୈ ସବ ପୀରା । ଜପତ ନିରଂତର ହନୁମତ ବୀରା ॥
ସଂକଟ ତେଁ ହନୁମାନ ଛୁଡ଼ାୱୈ । ମନ କ୍ରମ ବଚନ ଧ୍ୟାନ ଜୋ ଲାୱୈ ॥
ସବ ପର ରାମ ତପସ୍ୱୀ ରାଜା । ତିନ କେ କାଜ ସକଲ ତୁମ ସାଜା ॥
ଔର ମନୋରଥ ଜୋ କୋଇ ଲାୱୈ । ସୋଇ ଅମିତ ଜୀୱନ ଫଲ ପାୱୈ ॥
ଚାରୋଁ ଜୁଗ ପରତାପ ତୁମ୍ହାରା । ହୈ ପରସିଦ୍ଧ ଜଗତ ଉଜିୟାରା ॥
ସାଧୁ ସଂତ କେ ତୁମ ରଖୱାରେ । ଅସୁର ନିକଂଦନ ରାମ ଦୁଲାରେ ॥
ଅଷ୍ଟ ସିଦ୍ଧି ନୌ ନିଧି କେ ଦାତା । ଅସ ବର ଦୀନ ଜାନକୀ ମାତା ॥
ରାମ ରସାୟନ ତୁମ୍ହରେ ପାସା । ସଦା ରହୋ ରଘୁପତି କେ ଦାସା ॥
ତୁମ୍ହରେ ଭଜନ ରାମ କୋ ପାୱୈ । ଜନମ ଜନମ କେ ଦୁଖ ବିସରାୱୈ ॥
ଅଂତ କାଲ ରଘୁବର ପୁର ଜାଈ । ଜହାଁ ଜନ୍ମ ହରି-ଭକ୍ତ କହାଈ ॥
ଔର ଦେୱତା ଚିତ୍ତ ନ ଧରଈ । ହନୁମତ ସେଇ ସର୍ବ ସୁଖ କରଈ ॥
ସଂକଟ କଟୈ ମିଟୈ ସବ ପୀରା । ଜୋ ସୁମିରୈ ହନୁମତ ବଲବୀରା ॥
ଜୈ ଜୈ ଜୈ ହନୁମାନ ଗୋସାଈଁ । କୃପା କରହୁ ଗୁରୁ ଦେୱ କୀ ନାଈଁ ॥
ଜୋ ସତ ବାର ପାଠ କର କୋଈ । ଛୂଟହି ବଂଦି ମହା ସୁଖ ହୋଈ ॥
ଜୋ ୟହ ପଢ଼ୈ ହନୁମାନ ଚାଲୀସା । ହୋୟ ସିଦ୍ଧି ସାଖୀ ଗୌରୀସା ॥
ତୁଲସୀଦାସ ସଦା ହରି ଚେରା । କୀଜୈ ନାଥ ହୃଦୟ ମହଁ ଡେରା ॥

-ଦୋହା-

ପୱନତନୟ ସଂକଟ ହରନ,
ମଂଗଲ ମୂରତି ରୂପ ।
ରାମ ଲଖନ ସୀତା ସହିତ,
ହୃଦୟ ବସହୁ ସୁର ଭୂପ ॥

॥ ଇତି ॥



# ସଂକଟମୋଚନ ହନୁମାନାଷ୍ଟକ

ମତ୍ତଗୟନ୍ଦ ଛନ୍ଦ

ବାଲ ସମୟ ରବି ଭକ୍ଷି ଲିୟୋ ତବ
ତୀନହୁଁ ଲୋକ ଭୟୋ ଅଁଧିୟାରୋ ।
ତାହି ସୋଁ ତ୍ରାସ ଭୟୋ ଜଗ କୋ
ୟହ ସଂକଟ କାହୁ ସୋଁ ଜାତ ନ ଟାରୋ ॥
ଦେୱନ ଆନି କରୀ ବିନତୀ ତବ
ଛାଁଡ଼ି ଦିୟୋ ରବି କଷ୍ଟ ନିୱାରୋ ।
କୋ ନହିଁ ଜାନତ ହୈ ଜଗମେଁ କପି
ସଂକଟମୋଚନ ନାମ ତିହାରୋ ॥ ୧ ॥
ବାଲି କୀ ତ୍ରାସ କପୀସ ବସୈ ଗିରି
ଜାତ ମହାପ୍ରଭୁ ପଂଥ ନିହାରୋ ।
ଚୌଁକି ମହା ମୁନି ସାପ ଦିୟୋ ତବ
ଚାହିୟ କୌନ ବିଚାର ବିଚାରୋ ॥
କୈ ଦ୍ୱିଜ ରୂପ ଲିୱାୟ ମହାପ୍ରଭୁ
ସୋ ତୁମ ଦାସ କେ ସୋକ ନିୱାରୋ ॥ ୨ ॥ କୋ ନହିଁ....
ଅଂଗଦ କେ ସଁଗ ଲେନ ଗୟେ ସିୟ
ଖୋଜ କପୀସ ୟହ ବୈନ ଉଚାରୋ ।
ଜୀୱତ ନା ବଚିହୌ ହମ ସୋ ଜୁ
ବିନା ସୁଧି ଲାୟେ ଇହାଁ ପଗୁ ଧାରୋ ॥
ହେରି ଥକେ ତଟ ସିଂଧୁ ସବୈ ତବ
ଲାୟ ସିୟା-ସୁଧି ପ୍ରାନ ଉବାରୋ ॥ ୩ ॥ କୋ ନହିଁ....
ରାୱନ ତ୍ରାସ ଦଈ ସିୟ କୋ ସବ
ରାକ୍ଷସି ସୋଁ କହି ସୋକ ନିୱାରୋ ।
ତାହି ସମୟ ହନୁମାନ ମହାପ୍ରଭୁ
ଜାୟ ମହା ରଜନୀଚର ମାରୋ ॥
ଚାହତ ସୀୟ ଅଶୋକ ସୋଁ ଆଗି ସୁ
ଦୈ ପ୍ରଭୁ ମୁଦ୍ରିକା ସୋକ ନିବାରୋ ॥ ୪ ॥ କୋ ନହିଁ....

ବାନ ଲଗ୍ୟୋ ଉର ଲଛିମନ କେ ତବ
ପ୍ରାନ ତଜେ ସୁତ ରାୱନ ମାରୋ ।
ଲୈ ଗୃହ ବୈଦ୍ୟ ସୁଷେନ ସମେତ
ତବୈ ଗିରି ଦ୍ରୋନ ସୁ ବୀର ଉପାରୋ ॥
ଆନି ସଜୀୱନ ହାଥ ଦଇ ତବ
ଲଛିମନ କେ ତୁମ ପ୍ରାନ ଉବାରୋ ॥ ୫ ॥ କୋ ନହିଁ....
ରାୱନ ଜୁଦ୍ଧ ଅଜାନ କିୟୋ ତବ
ନାଗ କି ଫାଁସ ସବୈ ସିର ଡାରୋ ।
ଶ୍ରୀରଘୁନାଥ ସମେତ ସବୈ ଦଲ
ମୋହ ଭୟୋ ୟହ ସଂକଟ ଭାରୋ ॥
ଆନି ଖଗେସ ତବୈ ହନୁମାନ ଜୁ
ବଂଧନ କାଟି ସୁତ୍ରାସ ନିୱାରୋ ॥ ୬ ॥ କୋ ନହିଁ....
ବଂଧୁ ସମେତ ଜବୈ ଅହିରାୱନ
ଲୈ ରଘୁନାଥ ପତାଲ ସିଧାରୋ ।
ଦେୱିହିଁ ପୂଜି ଭଲୀ ବିଧି ସୋଁ ବଲି
ଦେଉ ସବୈ ମିଲି ମଂତ୍ର ବିଗ୍ରୋ ॥
ଜାୟ ସହାୟ ଭୟୋ ତବ ହୀ
ଅହିରାୱନ ସୈନ୍ୟ ସମେତ ସଁହାରୋ ॥ ୭ ॥ କୋ ନହିଁ....
କାଜ କିୟେ ବଡ଼ ଦେୱନ କେ ତୁମ
ବୀର ମହାପ୍ରଭୁ ଦେଖି ବିଗ୍ରୋ ।
କୌନ ସୋ ସଂକଟ ମୋର ଗରୀବ କୋ
ଜୋ ତୁମସୋଁ ନହିଁ ଜାତ ହୈ ଟାରୋ ॥
ବେଗି ହରୋ ହନୁମାନ ମହାପ୍ରଭୁ
ଜୋ କଛୁ ସଂକଟ ହୋୟ ହମାରୋ ॥ ୮ ॥ କୋ ନହିଁ....

ଦୋହା— ଲାଲ ଦେହ ଲାଲୀ ଲସେ, ଅରୁ ଧରି ଲାଲ ଲଁଗୂର ।
ବଜ୍ର ଦେହ ଦାନୱ ଦଲନ, ଜୟ ଜୟ ଜୟ କପି ସୂର ॥

॥ ଇତି ସଂକଟମୋଚନ ହନୁମାନାଷ୍ଟକ ସମ୍ପୂର୍ଣ୍ଣ ॥



# ଶ୍ରୀହନୁମତ୍ ସ୍ତବନ

ସୋ.—ପ୍ରନଵଉଁ ପଵନକୁମାର ଖଲ ବନ ପାଵକ ଗ୍ୟାନଘନ ।
ଜାସୁ ହୃଦୟ୍ ଆଗାର ବସହିଁ ରାମ ସର ଚାପ ଧର ॥

ଅତୁଲିତବଲଧାମଂ ହେମଶୈଳାଭଦେହଂ
ଦନୁଜବନକୃଶାନୁଂ ଜ୍ଞାନିନାମଗ୍ରଗଣ୍ୟମ୍ ।
ସକଲଗୁଣନିଧାନଂ ବନରାଣାମଧୀଶଂ
ରଘୁପତିପ୍ରିୟଭକ୍ତଂ ବାତଜାତଂ ନମାମି ॥

ଗୋଷ୍ପଦୀକୃତବାରୀଶଂ ମଶକୀକୃତରାକ୍ଷସମ୍ ।
ରାମାୟଣମହାମାଲାରତ୍ନଂ ବନ୍ଦେଽନିଲାତ୍ମଜମ୍ ॥
ଅଞ୍ଜନାନନ୍ଦନଂ ବୀରଂ ଜାନକୀଶୋକନାଶନମ୍ ।
କପୀଶମକ୍ଷହନ୍ତାରଂ ବନ୍ଦେ ଲଙ୍କାଭୟଙ୍କରମ୍ ॥
ଉଲ୍ଲଙ୍ଘ୍ୟ ସିନ୍ଧୋଃ ସଲିଳଂ ସଲୀଳଂ
ଯଃ ଶୋକବହ୍ନିଂ ଜନକାତ୍ମଜାୟାଃ ।
ଆଦାୟ ତେନୈବ ଦଦାହ ଲଙ୍କାଂ
ନମାମି ତଂ ପ୍ରାଞ୍ଜଳିରାଞ୍ଜନେୟମ୍ ॥

ମନୋଜବଂ ମାରୁତତୁଲ୍ୟବେଗଂ ଜିତେନ୍ଦ୍ରିୟଂ ବୁଦ୍ଧିମତାଂ ବରିଷ୍ଠମ୍ ।
ବାତାତ୍ମଜଂ ବାନରଯୂଥମୁଖ୍ୟଂ ଶ୍ରୀରାମଦୂତଂ ଶରଣଂ ପ୍ରପଦ୍ୟେ ॥
ଆଞ୍ଜନେୟମତିପାଟଲାନନଂ କାଞ୍ଚନାଦ୍ରିକମନୀୟବିଗ୍ରହମ୍ ।
ପାରିଜାତତରୁମୂଳବାସିନଂ ଭାବୟାମି ପବମାନନନ୍ଦନମ୍ ॥
ଯତ୍ର ଯତ୍ର ରଘୁନାଥକୀର୍ତ୍ତନଂ ତତ୍ର ତତ୍ର କୃତମସ୍ତକାଞ୍ଜଳିମ୍ ।
ବାଷ୍ପବାରିପରିପୂର୍ଣ୍ଣଲୋଚନଂ ମାରୁତିଂ ନମତ ରାକ୍ଷସାନ୍ତକମ୍ ॥



# ଶ୍ରୀହନୁମାନଜୀକୀ ଆରତୀ

ଆରତୀ କୀଜୈ ହନୁମାନ ଲଲା କୀ । ଦୁଷ୍ଟଦଲନ ରଘୁନାଥ କଲା କୀ ॥ ଘୋ.॥
ଜାକେ ବଲ ସେ ଗିରିଵର କାଁପୈ । ରୋଗ ଦୋଷ ଜାକେ ନିକଟ ନ ଝାଁପୈ ॥ ୧ ॥
ଅଂଜନି ପୁତ୍ର ମହା ବଲଦାଈ । ସଂତନ କେ ପ୍ରଭୁ ସଦା ସହାଈ ॥ ୨ ॥
ଦେ ବୀରା ରଘୁନାଥ ପଠାୟେ । ଲଂକା ଜାରି ସୀୟା ସୁଧି ଲାୟେ ॥ ୩ ॥
ଲଂକା ସୋ କୋଟ ସମୁଦ୍ର ସୀ ଖାଈ । ଜାତ ପଵନସୁତ ବାର ନ ଲାଈ ॥ ୪ ॥
ଲଂକା ଜାରି ଅସୁର ସଂହାରେ । ସିୟାରାମଜୀ କେ କାଜ ସଁଵାରେ ॥ ୫ ॥
ଲକ୍ଷ୍ମଣ ମୂର୍ଚ୍ଛିତ ପଢ଼େ ସକାରେ । ଆନି ସଜୀଵନ ପ୍ରାନ ଉବାରେ ॥ ୬ ॥
ପୈଠି ପତାଲ ତୋରି ଜମ-କାରେ । ଅହିରାଵନ କୀ ଭୁଜା ଉଖାରେ ॥ ୭ ॥
ବାୟେଁ ଭୁଜା ଅସୁର ଦଲ ମାରେ । ଦହିନେ ଭୁଜା ସଂତଜନ ତାରେ ॥ ୮ ॥
ସୁର ନର ମୁନି ଆରତୀ ଉତାରେ । ଜୈ ଜୈ ଜୈ ହନୁମାନ ଉଚ୍ଚାରେ ॥ ୯ ॥
କଂଚନ ଥାର କପୂର ଲୌ ଛାଈ । ଆରତି କରତ ଅଂଜନା ମାଈ ॥ ୧୦ ॥
ଜୋ ହନୁମାନ(ଜୀ)କୀ ଆରତି ଗାଵୈ । ବସି ବୈକୁଂଠ ପରମପଦ ପାଵୈ ॥ ୧୧ ॥

